## ॥ ସଂପାଦନା ॥

ଭବଗ୍ରାହୀ ମିଶ୍ର
ରମେଶ ଚନ୍ଦ୍ର ଧଳ

ଅଂଜଳି ପାଢୀ
ବିବୁଧ ରଂଜନ
ନନ୍ଦିନୀ ଶତପଥୀ
ସୁଧାଂଶୁବାଳା ପଣ୍ଡା
ପ୍ରଶାନ୍ତ ପଟ୍ଟନାୟକ




ଶୈଳରଣୀ ମିଶ୍ର
ପର୍ଣ୍ଣାନନ୍ଦ ଦାନୀ
ମନୋଜ ଦାସ
ରଘନାଥ ମହାପାତ୍ର
ଶ୍ରୀନିବାସ ଉଦ୍‌ଗାତା

ପ୍ରାଣବନ୍ଧୁ କର
ବୀଣାପାଣି ମହାନ୍ତି
କୃଷ୍ଣଚରଣ ବେହେରା

ରମେଶ ଚନ୍ଦ୍ର ଧଳ
ଭବଗ୍ରାହୀ ମିଶ୍ର

ମୟୂର ପବ୍ଲିକେସନ୍ସ



# କଥାଣି (୧୯୮୪)

ସମ୍ପାଦନା :

ଡକଟର ଖଗେନ୍ଦ୍ରନାଥ ମିଶ୍ର

ଶ୍ରୀ ରମେଶ ଚନ୍ଦ୍ର ଧଳ



ମୟୂର ପବ୍ଲିକେସନ୍ସ
ଭୁବନେଶ୍ୱର

କଥାଣି (୧୯୮୯)
ସମ୍ପାଦନା :
ଡକ୍ଟର ଭବଗ୍ରାହୀ ମିଶ୍ର
ଶ୍ରୀ ରମେଶ ଚନ୍ଦ୍ର ଧଳ
ପ୍ରଚ୍ଛଦ : ଅମର କୁମାର ଜେନା
ମୁଦ୍ରଣ : ଡଗର ପ୍ରେସ
ଭୁବନେଶ୍ୱର
ମୂଲ୍ୟ : କୋଡିଏ ଟଙ୍କା

**Kathani (1989)**
(An Anthology of 15 stories)
Eds : **Dr. Bhabagrahi Misra**
**Sri Ramesh ch. Dhall**
Cover : **Amar ku. Jena**
Printer : **Dagara Press**
Bhubaneswar
Rupees **Twenty only**

MAYUR PUBLICATIONS
C/5, Unit-3,
Kharavela Nagar
Bhubaneswar-751001

## କଥାଣି (୧୯୮୯)ର ପାଠକ ପାଠିକାଙ୍କୁ....

"କଥାଣି"—ଏଇ ପରିକଳ୍ପନା କରାଯାଇଥିଲା ବହୁ ବର୍ଷ ପୂର୍ବେ । ସେତେବେଳେ ମନେ ହେଉଥିଲା ଯେ ଓଡ଼ିଆ ଭାଷାରେ ମୁଦ୍ରିତ ପୁସ୍ତକମାନଙ୍କ ମଧ୍ୟରୁ ଗପ ଓ ଉପନ୍ୟାସ ପଢ଼ିବା ଲୋକଙ୍କ ସଂଖ୍ୟା ଅଧିକ । ଏଇ ଅନୁମାନକୁ ଭିତ୍ତି କରି କିଛି ଦିନ ମାରିବରେ ତଥ୍ୟ ସଂଗ୍ରହ କରି ଦେଖାଗଲା ଯେ ଏ ଅନୁମାନ ସତ୍ୟ ।

ଓଡ଼ିଶାର ତେରଟି ଜିଲ୍ଲାରେ ବହୁ ଗାଳ୍ପିକ ରଚନାରେ ଏବେ ବି ନିଜକୁ ନିୟୋଜିତ କରି ରଖିଛନ୍ତି । କିନ୍ତୁ ସେ ସମସ୍ତଙ୍କୁ ଗୋଟିଏ ସଙ୍କଳନ ଭୁକ୍ତ କରିବା ସମ୍ଭବ ହେଲା ନାହିଁ । ବିଭିନ୍ନ ଗାଳ୍ପିକଙ୍କର ବିଭିନ୍ନ ପ୍ରକାରର ପାଠକ ଅଛନ୍ତି । ତେଣୁ ବିଚାର କରାଗଲା ଯେ ବିଭିନ୍ନ ସ୍ୱାଦର ଗଳ୍ପ ଏକତ୍ର ପରିବେଷଣ କରିବା ଫଳରେ ଅନ୍ତତଃ ୧୫ ଜଣ ଗାଳ୍ପିକଙ୍କର ରଚନାର ବୈଶିଷ୍ଟ୍ୟ, କଥନ ଧର୍ମୀତା ଚରିତ୍ର ଚିତ୍ରଣ ଶୈଳୀର ବିଭିନ୍ନତା ପରିଦୃଷ୍ଟ ହେବା ସଙ୍ଗେ ସଙ୍ଗେ, ସ୍ରଷ୍ଟାର ବ୍ୟକ୍ତିମାନସକୁ ଓଡ଼ିଶୀ ସମାଜର ସାମାଜିକ ବିବର୍ତ୍ତନ କିପରି ଭାବରେ ପ୍ରଭାବିତ ବା ଅନୁପ୍ରାଣିତ କରିଛି, ତାହା ସୂଚନାରେ ହେଲେ ବି ବୁଝି ହେଇ ହେବ ।

ଅବଶ୍ୟ କଥକମାନେ ସେମାନଙ୍କର ସୃଷ୍ଟିର ପ୍ରସ୍ବେଦନାରେ, ବେଦନାରେ ଓ ପ୍ରକାଶରେ ପାଠକଠାରୁ ଯେଉଁ ସହୃଦୟତା ବା ଅନୁକମ୍ପା ଆଶା କରନ୍ତି, ସମାଜର ଅନ୍ୟାନ୍ୟ ପ୍ରତିଷ୍ଠା ଭଳି ସେଭଳି ଆଦର ପାଇ ନ ଥାନ୍ତି । ଥରେ ଜଣେ ସାହିତ୍ୟିକ ବନ୍ଧୁ କହୁଥିଲେ "ମୋ ଲେଖା ଯଦି ମାତ୍ର ୧୦ ଜଣକୁ କିଛି ଆନନ୍ଦ ଦେଇଥାଏ ବା ସମାଜ ବିଷୟରେ ଚିନ୍ତା କରିବାକୁ ଅନୁପ୍ରାଣିତ କରିଥାଏ, ତେବେ ମୋର ଲେଖକ ଜୀବନର ଆନନ୍ଦ ସେତିକି" ।

## କଥାଣି (୧୯୮୯)

# କାହାଣୀ : ଦୁଇଟି ବିଦଗ୍ଧ ଆତ୍ମାର

• ଶୈଳରାଣୀ ମିଶ୍ର

ଅସ୍ତବ୍ୟସ୍ତ ହୋଇ କ୍ୟାବିନ୍‌ର ପରଦା ଠେଲି ଭିତରକୁ ପଶିଗଲେ ପ୍ରଭଞ୍ଜା । ଦିଗମ୍ବର ପିଠି ବୁଲାଇ ଶୋଇଛନ୍ତି । ପଛପଟୁ ସମସ୍ତ ପଞ୍ଜରା ହାଡ଼ ହାତଠେକି ଗଣ୍ଟି ହେଉଛନ୍ତି ଯେପରି । କ୍ଷୀଣ ଶ୍ୱାସ ପ୍ରଶ୍ୱାସର ଗତି । ତଥାପି ସମୁଦାୟ ଦେହଟା ଦୋହଲି ଯାଉଛି । କେତେ ଦୁର୍ବଳ ହୋଇଗଲେଣି ଦିଗମ୍ବର ! ପ୍ରଭଞ୍ଜାଙ୍କର ଏତେ ସେବା....ଏତେ ଆନ୍ତରିକ ଶୁଶ୍ରୂଷା...କିଛିର କଣ ମୂଲ୍ୟ ନାହିଁ ? ହେ ଭଗବାନ ! !

ପ୍ରଭଞ୍ଜାଙ୍କ ମୁଖରୁ ନିଃସୃତ ହେଲା 'ହେ ଭଗବାନ'—ଆଉ କିଏ ଅଛି ଏ ଦୁଃସହ ବିପଦ...ଏଇ ଦୁର୍ଦ୍ଦିନରେ ନିସ୍ୱସ୍ଥର ସାହା ? କିନ୍ତୁ ସେ ସ୍ୱର ଏତେ ଆବେଗରୁଦ୍ଧ ଯେ ଶବ୍ଦଗୁଡ଼ିକ ବାୟୁତରଙ୍ଗରେ ପ୍ରବେଶ କରିପାରିଲା ନାହିଁ ।

ନିଜକୁ ସଂଯତ କରି ପ୍ରଭଞ୍ଜା ଦିଗମ୍ବରଙ୍କର ପାଦତଳକୁ ଆସିଲେ । ଦିଗମ୍ବରଙ୍କୁ କଣ ନିଦ ଲାଗିଯାଇଛି ? ନା ସେ ଅହରହ ମୃତ୍ୟୁ ସହିତ ପ୍ରତ୍ୟକ୍ଷ ସମର କରିକରି ଶେଷରେ ହାରି ଯାଇଛନ୍ତି ଚିରଦିନ ଲାଗି ? ହରାଇ ବସିଛନ୍ତି ନିଜର ଏକମାତ୍ର ସତ୍ତାକୁ ?

ଦିଗମ୍ବରଙ୍କର ପାଦ ଦୁଇଟିରେ ଭୟବିହ୍ୱଳିତ ଦୁଃସହ ଦୁଃଖରେ ଉଦ୍‌ବେଳିତ ହୃଦୟ ନେଇ ହାତ ରଖିଲେ ପ୍ରଭଞ୍ଜା । ନାଁ-ଥଣ୍ଡା ହୋଇନାହିଁ । ଖାଇବାକୁ ନେଇ ଆସିବାରେ ଆଜି ପ୍ରଭଞ୍ଜାଙ୍କର ହୋଇଛି ସବୁଠାରୁ ବେଶୀ ବିଳମ୍ବ । ସେଥିପାଇଁ କଅଣ ଦିଗମ୍ବର ଅଭିମାନ କରିଛନ୍ତି ? ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ? କିନ୍ତୁ କେମିତି ଜାଣିବେ ଦିଗମ୍ବର, ପ୍ରଭଞ୍ଜା ଆଜି ତା'ର ପର୍ବତଶିଖର ତୁଲ୍ୟ ଉଚ୍ଚ ଶିରକୁ ଅବନତ କରି ତଳକୁ ଖସି ଆସିଛି । ଏଇ ମାଂସ ଷ୍ଟୁ, ଫଳରସ ପୁଡ଼ିଂ ଇତ୍ୟାଦି ଧରି ଆସିବା ପାଇଁ କେତେ ସାହସ ସଞ୍ଚୟ କରି ସାହାଯ୍ୟ ମାଗିବାକୁ ପଡ଼ିଛି ।

ପାଦଟିକୁ ଅଳ୍ପ ଆଉଁସି ପ୍ରଜ୍ଞା କହିଲେ

— ବହୁତ ଡେରି ହୋଇଗଲା ଆଜି ।

ଦିଗମ୍ବର ସତରେ ଶୋଇ ନ ଥିଲେ । ସେ ଗର୍ଜ୍ଜି ଉଠିଲେ । ସତେ ଯେପରି ଦେହରେ ତାଙ୍କର ଢେର ସିଂହର ବଳ ।

—ଆଜି ? କେଉଁ ଦିନ୍ ଚଞ୍ଚଳ ଆସୁଛ କି ମହାରାଣୀ ?

ଚମକି ପଡ଼ିଲେ ପ୍ରଜ୍ଞା ।

ମହାରାଣୀ ?

ମହାରାଣୀ ସେ କଣ ଆଉ ନିଜକୁ ଭାବି ପାରୁଛନ୍ତି ? ଏଇ ଦୁଇବର୍ଷ ଭିତରେ ସେ ପାଲଟିଗଲେ ଭିଖାରୁଣୀ । କେବଳ ଯାହା ମନ୍ଦିର ଦ୍ୱାରରେ ହାତ ପତେଇ ନାହାନ୍ତି । ତଥାପି ଏସବୁ କହି ରୁଗ୍ଣ ଦିଗମ୍ବରଙ୍କୁ ସେ ଅଧିକ ଉତ୍ତେଜିତ କରିବେ କାହିଁକି ? ଦିଗମ୍ବରଙ୍କୁ ସେ ବଞ୍ଚାଇ ରଖିବାକୁ ଚାହାନ୍ତି । ବଞ୍ଚାଇ ରଖାଇବାକୁ ଚାହାନ୍ତି ତାଙ୍କର ସନ୍ତାନ ।

କିଛି ନ ଶୁଣିଲା ଭଳି ଛଳନା କରି ପ୍ରଜ୍ଞା ଟିଫିନ୍ କ୍ୟାରିଆର୍ ଖୋଲି ପ୍ଲେଟରେ ବାଢ଼ିବାକୁ ଆରମ୍ଭ କରିଦେଲେ । ଏହି ଖାଦ୍ୟହିଁ ଦିଗମ୍ବରଙ୍କୁ ଆଜି ପର୍ଯ୍ୟନ୍ତ ଓଞ୍ଚାରି ରଖିଛି ।

— ନା-ମୁଁ ସେ ବିଷଗୁଡ଼ାକ ଖାଇବ ନାହିଁ ।

ଆହୁରି କଠୋର ଓ କର୍କଶ ଦିଗମ୍ବରଙ୍କର ସ୍ୱର ।

ସହି ପାରୁନାହାନ୍ତି ପ୍ରଜ୍ଞା । ତଥାପି ସହିବାକୁ ପଡ଼ିବ ।

—ସୁନାଟା ପରି । ଏମିତି ହୁଅନ୍ତି ? ଏତେ ବିରକ୍ତ ହେଲେ ଦେହ ବେଶୀ ଖରାପ ହୋଇଯିବ ନା ?

— ଦେହ ! ଦେହକୁ ତୋର କି ମମତା ? ସେଥିପାଇଁ ଜାଣିଶୁଣି ଷଡଯନ୍ତ୍ର କରି ବିଷ ଆଣି ମୋତେ ଦେଉଛୁ ପ୍ରତିଦିନ । ନରମିଷ ବିଷ । ଧୀରେ ଧୀରେ ସେ ମୋର ଦେହକୁ ପଳପଳ କରି କୋରି ଖାଇଯାଉଛି ।

ହେ ଭଗବାନ, ମୋତେ ଶକ୍ତି ଦିଅ; ସହିବାକୁ ଶକ୍ତି ଦିଅ । ମନେମନେ ପ୍ରାର୍ଥନା କରୁଛନ୍ତି ପ୍ରଜ୍ଞା ।

—ତୋ ହାତରୁ ଆଜ ଏ ଖାଦ୍ୟ ଖାଇଲେ ମୁଁ ସଙ୍ଗେ ସଙ୍ଗେ ମରିଯିବ ।

କାନ୍ଦ ପକାଇବେ କ ପ୍ରତିଜ୍ଞା ? କନ୍ତୁ କାନ୍ଦବେ କାହା ପାଖରେ ? କାହାର ପାଦତଳେ ନଜକୁ ଆଶ୍ରିତା କର ଅକାତରେ ଲୁହ ଢ଼ାଳ ଦେବେ ? କ.ନ୍ଦୁଛନ୍ତ ପ୍ରତିଜ୍ଞା । ହୃଦୟ ମଧ୍ୟରୁ ପ୍ରତ ମୁହୂର୍ତ୍ତରେ ଲକ୍ଷ ଲୁହର ଝରଣା । କେହ ଦେଖି ପାରୁନାହାନ୍ତ । ସମସ୍ତେ ଧର ନେଇଛନ୍ତ ପ୍ରତିଜ୍ଞା ହୋଇଯାଇଛୁ ନଷ୍ଠୁର ପଥର । ଏ ଦୁଃସମୟରେ ପ୍ରତିଜ୍ଞାର ଆଖିରେ ଲୁହ ନାହିଁ !! କାହାକୁ ଦେଖି ସେ ଲୁହର ବନ୍ୟା ନଚ୍ଛୁଟାଇ ରହିପାରୁଛନ୍ତ କମିତ ? ସେମାନେ କେମିତ ଜାଣିବେ ସହାନୁଭୂତରେ ନମ୍ର ହୋଇ ନଜର କର୍ତ୍ତବ୍ୟକୁ ଭୁଲିଗଲେ ଚଳବ ନାହିଁ ପ୍ରତିଜ୍ଞାଙ୍କର । ତାଙ୍କୁ କର୍ତ୍ତବ୍ୟ କରବାକୁ ପଡ଼ବ । ହରମ୍ବରଙ୍କୁ ବଞ୍ଚାଇବାକୁ ପଡବ ।

ପ୍ରତିଜ୍ଞା ପ୍ଲେଟ୍‌ଟିକୁ ନେଇ ହରମ୍ବରଙ୍କର ସମ୍ମୁଖ ଟେବୁଲ ଉପରେ ରଖିଲେ ।

– କଣ ସିନେମ। ଚ୍ଳଉଛ ?

ରୁକ୍ଷ ଗଳାରେ ଚତ୍କାର କଲେ ହରମ୍ବର

—କାହାକୁ ଦେଖାଉଛୁ ଏ ଅଭନୟ କୌଶଳ ?

ଅଭନୟ କରୁଛନ୍ତ ପ୍ରତିଜ୍ଞା ? ହରମ୍ବର କହିପାରୁଛନ୍ତ ତାଙ୍କୁ ଏ ନଷ୍ଠୁର ବଚନ ? ସମବେଦନାରେ ହରମ୍ବରଙ୍କର ଅନ୍ତର ଫାଟି ଯାଉ ନାହିଁ ? ଫିଟି ଯାଉ ନାହିଁ ଅତୀତ—ଗନ୍ତାଘରର ଅନେକ କବାଟ ?

ନାଁ, ସେ ଦ୍ୱାର ଚରଦନ ପାଇଁ ବନ୍ଦ ହୋଇଯାଇଛୁ । ସେଠି ଝର ଯାଉ ନାହିଁ ସ୍ନେହର ଫଲଗୁ ଧାର । ସେଠି କେବଳ ନର୍ତ୍ତନ କରୁଛୁ ଅହଂର ଉଷ୍ଣପ୍ରସ୍ରବଣ । ଫୁଟନ୍ତା ପାଣିରେ ଗନ୍ଧକର ଦୂଷିତ ବାତାବରଣ । ସେଇଠି କଣ ଖୋଜୁଛନ୍ତ ସେ ?

ଝ୍ରମତରେ ଝ୍ରମତେ ସୁପ୍ ହରମ୍ବରଙ୍କର ଓଠ ପାଖକୁ ନେଲେ ପ୍ରତିଜ୍ଞା ମୁହଁ ଟେକ ହରମ୍ବରଙ୍କୁ ଚୁହିଁବାକୁ ଇଚ୍ଛା ହେଉନ ପ୍ରତିଜ୍ଞାଙ୍କର । ତଥାପି ନୂଠାଇବାକୁ ପଡ଼ବ । ଟିକଏ ସୁପ୍ ଓଠରୁ ତଳକୁ ଖସି ଆସିଲେ ହରମ୍ବର ସମ୍ଭାଳ ପାରବେ ନାହିଁ ।

—କଦ୍ଳୀ ଫଳ ମୁଁ ଖାଇବି ନାହିଁ । ଏ ପ୍ରହସନ ଚାଲିଛି କାହିଁକି ?

— ଏତିକି ଅ.ଗ ଖାଇଦିଅ । ତାପରେ ମନଇଚ୍ଛା ମୋତେ ଗାଳିଦିଅ । ତୁମକୁ ମୋ ରାଣ । କେତେ କଷ୍ଟରେ ଏତିକି ଆଣିଛି କଦ୍ଳୀ ।

— କଷ୍ଟରେ ? କାହିଁକି ଲବଣୀ ପିଠୁଳାକୁ କିଏ ଏତେ କଷ୍ଟ ଦେଲା ?

ଲବଣୀ ପିଠୁଳା ? ହଁ ମନେ ପଡ଼ୁଛି ସେ ସତରେ ଥିଲେ ଲବଣୀ ପିଠୁଳା । ଖରାକୁ ଟିକିଏ ଚାଲିଗଲେ ମୁହଁ କାନ ପାଚି ଲାଲ ପଡ଼ି ଯାଉଥିଲା । ସେତେବେଳେ ହସି ହସି ଦିଗମ୍ବର କହୁଥିଲେ ଓଃ,···· ଲବଣୀ ପିଠୁଳା । ଟିକିଏ ଖରା ବି ସହି ପାରିବେ ନାହିଁ । ଦେଖ ମୋତେ···ଏଇ ଖରାରେ ଆଠ ଘଣ୍ଟା ବୁଲି ଆସିଲି । କିଛିତ ହୋଇନାହିଁ ।

ସତେ ଦିଗମ୍ବର ଥିଲେ କେଡ଼େ କର୍ମଠ । ଏତେ ପରିଶ୍ରମ ପରେ ମଧ୍ୟ ବଗିଚା ସାରା ବୁଲି ଫୁଲଗଛ ମାନଙ୍କର ତଦାରଖ କରୁଥିଲେ । ଗୋଲାପ ମୂଳରେ ସାର ଦେଉଥିଲେ । ବଡ଼ିଂ କରୁଥିଲେ । ହସି ହସି କହୁଥିଲେ —

—ଦେଖ ମୋ ଗୋଲାପକୁ । କମିତି ହସୁଛି । ଏତେ ଖରାରେ ମଧ୍ୟ ତା ମୁହଁ ଝାଉଁଳି ପଡ଼ୁନି । ଆଉ ତୁମେ ? ଯୁକ୍ତି କରୁଥିଲେ ପ୍ରତିଜ୍ଞା ।

—ହଁ ତୁମେ ସବୁବେଳେ ତା ପଛରେ କେତେ ଲାଗିଛ ଯେ ! କେତେ ଯତ୍ନ କରୁଛ ।

—ତୁମକୁ କଣ ଅଯତ୍ନ କରୁଛି ? ତଥାପି ତୁମେ ଝାଉଁଳି ପଡ଼ୁଛ ।

ହସୁଥିଲେ ପ୍ରତିଜ୍ଞା ମଧ୍ୟ । ତୁଳନା କରୁ ନ ଥିଲେ ଗୋଲାପ ସହିତ ନିଜକୁ । ଗୋଲାପକୁ ଦିଗମ୍ବର ପ୍ରତିଜ୍ଞାଙ୍କଠୁ ବି ବେଶୀ ଯତ୍ନ କରନ୍ତି ଏକଥା କହି ପ୍ରତିବାଦ କରୁନଥିଲେ । ତାଙ୍କର ପ୍ରାପ୍ୟ ସେ ପାଉଛନ୍ତି । ଯଦିବା କଲେ ଦିଗମ୍ବର ଗୋଲାପର ଯତ୍ନ ସେଥିରେ ନିଜକୁ ନ୍ୟୁନ ମନେ କରିବା କଣ ଦରକାର ? ଗୋଲାପ ଗଛ ପାଇଁ ଯେତେ ଟଙ୍କା ଖର୍ଚ୍ଚ କରିଛନ୍ତି ତାକୁ ଯଦି ବ୍ୟାଙ୍କରେ ରଖିଥାଆନ୍ତେ । ଏହି ଭାବନାଟା ଏତେଦିନ ପରେ ଆଜି ମନରେ ପ୍ରଥମେ ଉଦିତ ହେଲା । ଦିଗମ୍ବରକୁ ସେ କେବେ ସମାଲୋଚନା କରିନାହାନ୍ତି । କେତେବେଳେ ଆଶଙ୍କା କରିନାହାନ୍ତି ତାଙ୍କ ଜୀବନରେ ଆସିବ ଏହି ଦୁର୍ଦ୍ଦିନ....ସେଇ ଗୋଲାପ ମୂଳରେ ସାର ଦେଉ ଦେଉ ଟଳିପଡ଼ିବେ ଦିଗମ୍ବର । ଆଉ····

କହିଲି ପରା, ଯାହା କହିବାର ଖାଇ ସାରଲେ କହିବ । ତେଣିତ ହୋଇଗଲା ଚିକଏ ।

—ଟିକଏ ? ଟିକଏ ଲଗିବନି ଖାଇବାକୁ ? ଚାଲିଥିବ କାହା ସହିତ ପ୍ରେମାଳାପ । ଆଉ ସମୟ ଜଣା ପଡ଼ୁଥିବ ?

— ପ୍ରେମାଳାପ ?

ନିଜକୁ ଯେତେ ସଯତ କରିବାକୁ ଚାହୁଁଥିଲେ ମଧ ଅସନ୍ତୁଷ୍ଟ କଣ୍ଠରୁ ଅଗ୍ନି ଉଦ୍‌ଗୀରଣ ପରି ବାହାରି ଆସିଲା ଶବ୍ଦଟି ।

—ହଁ, ହଁ, ପ୍ରେମାଳାପ । ମୁଁ ଏଠି ଆଖି ବୁଜି ଶୋଇଛି ବୋଲି କିଛି ଦେଖି ପାରୁନାହିଁ ଭାବୁଛ ?

ମୋର ଆଖି ଆଗରେ ତୁମେ କରିଯିବ ରାସଲୀଳା...ଆଉ ମୁଁ ଜାଣି ପାରିବ ନାହିଁ ?

—ହେ ଭଗବାନ, ଏକଥା ମଧ ଶୁଣିବାକୁ ଥିଲା ପୁଣି ତୁମ ମୁହଁରୁ ?

—ମୁଁ କଣ ମୂକ ହୋଇଯିବି ? ହଁ ସେଇ ଷଡ଼ଯନ୍ତ୍ରରେ ତ ଲଗିଛ ତୁମେ ଦୁହେଁ ।

— ଦୁହେଁ ?

—ହଁ, ଦୁହେଁ । ସେଇ ଟୋକା ଡାକ୍ତର ତୁମର କଅଣ ? କଣ ପାଇଁ ସେ ଏଠି ବସି ବସି ତୁମପାଇଁ ରାତି ଅନିଦ୍ରାରେ କଟାଏ ? କଣ ପାଇଁ ତୁମେ ତାକୁ ଭଲ ଭଲ ଜିନିଷ ରାନ୍ଧି ଖୁଆଅ ?

— ତୁମକୁ ମୁଁ ବୁଝାଇବି ? ତୁମେ କଣ ଗ୍ରେଟ ପିଲା ହୋଇଗଲ ? ମୋର ପରା ଚାରି ଚାରିଟା ପୁଅଝିଅ ! ମୋ ବୟସରେ ଏମିତି ଚିନ୍ତା କରନ୍ତି ?

—ସେଇ ଚିନ୍ତା ମୋତେ କୋରି କୋରି ଖାଇ ଚାଲିଛି । ଖାଲି ମୋତେ ନୁହଁ, ମୋର ରକ୍ତ ମାଂସ ଅସ୍ଥି ମଜ୍ଜା ସବୁ ଶୋଷି ଶୋଷି ମୋତେ ଆଜି ମରଣ ମୁହଁକୁ ଠେଲି ଦେଉଛି । କେବଳ ତୁମରି ଚିନ୍ତା !

— ଅନ୍ୟ କିଛି ଭଲ ଚିନ୍ତା ମୋ ବୟସରେ କରି ପାରିଲ ନାହିଁ ? ଏ ଅସହାୟ ଅବସ୍ଥାରେ ମୋ ପ୍ରତି ତୁମର ସହାନୁଭୂତି ଉଦ୍ରେକ ହେଲା ନାହିଁ ? କେବଳ ଏଇ ଗୋଟିଏ ମିଛ, ହୀନ ଚିନ୍ତା ନେଇ ତୁମେ ବିବ୍ରତ ହୋଇପଡ଼ୁଛ ?

—ଏଇ ଗୋଟିଏ ଚିନ୍ତା ? ଏଇ କଣ କମ୍ ? କ୍ୟାନ୍‌ସର ରୋଗର ଯନ୍ତ୍ରଣା ମୋତେ ଯେତେ କଷ୍ଟ ନ ଦେଉଛି...ତା'ଠୁ ବେଶୀ ଦେଉଛି ତୁମର ସେ ଡାକ୍ତରକୁ ଅନାଇ ଯେଉଁ ବକ ହସ ।

—ବକ ହସ ! ତା ମଧ୍ୟ ତୁମେ ଦେଖି ପାରୁଛ ?

—ଦେଖିବନି ? ଏଇ ସବୁ ଦେଖିବାକୁ ଏହି ଯମଯନ୍ତ୍ରଣା ସହି ମୁଁ ଯେ ବଞ୍ଚି ରହିଛି ।

—ବନ୍ଦକର, ବନ୍ଦକର ତୁମକଥା ମୁଁ ଆଉ ଶୁଣି ପାରୁନି ପାପର ଏ କଦର୍ଯ୍ୟମାକ୍ତ ସ୍ପର୍ଶ ।

—ଶୁଣିବ କିପରି ? ସତ୍ୟ ଯେ ସବୁବେଳେ ଦୁଃସହ । ଦିଗମ୍ବର ଆଜି ରୋଗଶଯ୍ୟାରେ...ଦିଗମ୍ବର ପଙ୍ଗୁ, ଦିଗମ୍ବର ବିକଳାଙ୍ଗ ।

—ମୁଁ ନିଜକୁ ସଫେଇ ଦେଉନି । କହୁଥିଲେ ପ୍ରତାରଣା । ମୋ' ବିଷୟରେ ଯାହାସବୁ କହି ଚାଲିଛ ସେ କଣ ଅନ୍ତର ଭିତରୁ ନା ରୋଗ ଯନ୍ତ୍ରଣା ସହ୍ୟ କରି ନ ପାରି ଏ ଖାଲି ଏକ ସାଧାରଣ ଆତ୍ମବିସ୍ମୃତି ?

—ତୁମେ କଣ ନିଜକୁ ସଫେଇ ଦେବ ? କଣ ମୁଁ ନ ଦେଖିଛି ଏଇ ଦୁଇବର୍ଷ କାଳ ଖଟରେ ପଡ଼ିରହି ?

—ବେଶ୍, ଦୁଇ ବର୍ଷକାଳ ତ ଦେଖିଛ । ଆଜି ଆଉ ଏତେ ବ୍ୟସ୍ତ କାହିଁକି ? ବରଂ ସୁପଟା ପିଇଦିଅ । ଥଣ୍ଡା ହୋଇଯାଉଛି ଯେ ପାଟିକୁ ରୁଚିବ ନାହିଁ ।

—ରୁଚି ବୋଲି ମୋର ଆଉ କିଛି ଅଛି ! ମୋରି ସମ୍ମୁଖରେ ମୋର ସ୍ତ୍ରୀ ପରପୁରୁଷ ସହିତ ପ୍ରେମାଳାପ କରୁଛି ରାତି ରାତି ଉଜାଗର ରହି । ତାକୁ ମୁଁ ସହ୍ୟ କରୁଛି ବର୍ଷ ବର୍ଷ ଧରି ।

—ବର୍ଷ ବର୍ଷ ଧରି ତୁମ ସ୍ତ୍ରୀ ଉଜାଗର ରହୁଛି କାହାପାଇଁ ?

—ସେଇ...ସେଇ...ତାରି ପାଇଁ । କିନ୍ତୁ ଜାଣିରଖ...ସେ ମଧ୍ୟ ତୁମକୁ ଠକି ଦେଇ ଚାଲିଯିବ । ତାର ଏ ବୟସରେ ଅନେକ ରଙ୍ଗୀନ୍ ପ୍ରଜାପତି ଡେଣା ମେଲାଇ ଉଡୁଛନ୍ତି ତା' ଚାରିପାଖରେ । ତୁମ ପରି ଗୋଟାଏ ପୌଢ଼ାକୁ ସେ ଆଦୌ ବସିବ ନାହିଁ ।

—ତଥାପି ତୁମେ ବଡଲୋକ ! ସେ ତ ବସ୍ତୁ ଡେଣା ମେଲାଇ ଉଡ଼ିଯିବ ଅସଂଖ୍ୟ ପ୍ରଜାପତିଙ୍କ ନିକଟକୁ । ତୁମେ କଣ କରିବ ? ମୁଁ କଅଣ କରିବ ?

ତୁମେ ଆତ୍ମହତ୍ୟା କରିବ । ଅଉ ମୁଁ—

—ଆତ୍ମହତ୍ୟା ! ଆତ୍ମହତ୍ୟା କରିବାର ଥିଲେ କରି ସାରନ୍ତିଣି ଅନେକ ଦିନୁ । କିନ୍ତୁ ଆତ୍ମହତ୍ୟା ନାରୀ ଜୀବନର କାମ୍ୟ ନୁହେଁ । ଆତ୍ମ ବିସର୍ଜନ ହିଁ ତା'ର ଶ୍ରେଷ୍ଠ ଆଶା ।

—ଆତ୍ମ ବିସର୍ଜନ କଲେ ମଧ୍ୟ ସେ ତୋତେ ଗ୍ରହଣ କରିବ ନାହିଁ । ତୋ'ର ଏ ଲିଭି ଆସୁଥିବା ଯୌବନ ତାକୁ ଧରି ରଖିପାରିବ ନାହିଁ ।

—କ ହିଁକ ? କାହିଁକି ସେ ମୋତେ ଧରି ରଖିବ ? ସ୍ୱାମୀ ହୋଇ ତ ତୁମେ ମୋତେ ଧରି ରଖି ପାରିଲନି । ତୁମେ ଶଠ, ପ୍ରବଞ୍ଚକ ।

କଥାର ଉତ୍ତେଜକ ସ୍ରୋତ କେଉଁଠାରୁ କେଉଁଠାକୁ ଗଡ଼ିଗଲା ପ୍ରତିଜ୍ଞା ବୁଝିପାରିଲେ ନାହିଁ । ନିଜକୁ ଆତ୍ମସମ୍ବରଣ କରି ଫେରାଇ ଆଣି ପାରିଲେ ନାହିଁ । ଅନେକ ଯୁଗର ଅବଦମିତ ପୁଞ୍ଜୀଭୂତ ବେଦନା ସତେ ଯେପରି ପଥର ଫଟାଇ ଛୁଟି ଆସୁଛି । ଦିଗମ୍ବର ଦୁର୍ବଳ.. ତାଙ୍କର ସ୍ନାୟୁ ଦୁର୍ବଳ...ତାଙ୍କର ମସ୍ତିଷ୍କରେ ଅନାଗତ ଅନ୍ଧକାରର ଭୟ....ତାଙ୍କର ଶିରାପ୍ରଶିରାରେ ଉର୍କଟ ବେଗ ଜୀବାଣୁ । ଦିଗମ୍ବର ବଞ୍ଚିବାକୁ ଚାହାନ୍ତି...ସଫଳତାର ହସ ହସିବାକୁ ଚାହାନ୍ତି...ପ୍ରାଣପଣେ ସେ ଯୁଦ୍ଧ କରି ଚାଲିଛନ୍ତି । କିନ୍ତୁ ବିଫଳ ସେ ଆଶା...ସ୍ୱର୍ଗ ପଡ଼ିବା ପୂର୍ବରୁ ସେ ସମସ୍ତଙ୍କୁ ସ୍ୱର୍ଗ ଭୂଜ ଚୂରମାର୍ କରି ଦେବାକୁ ଚାହୁଁଛନ୍ତି ବୋଧହୁଏ ।

—ହଁ, ମୁଁ ଶଠ, ପ୍ରବଞ୍ଚକ...ମୋ ସ୍ତ୍ରୀକୁ ରାଣୀ କରି ରଖିଥିଲି....ମୁଁ ପଡ଼ିରହିଛି ଆଜି...ଆଉ ରାଣୀ ଚାଲିଛନ୍ତି ଅଭିସାରରେ....ମହୁମାଛି ସାଜି ଅନ୍ୟକୁ ଆକର୍ଷଣ କରିବାରେ....

—ମହୁମାଛିକୁ ସମସ୍ତେ ଯତ୍ନ କରନ୍ତି—ତାଙ୍କର ଭବିଷ୍ୟତ ବଂଶଧରଙ୍କ ପାଇଁ । ତୁମେ କଣପାଇଁ ଯତ୍ନ କରୁଥିଲ ? ଭବିଷ୍ୟତ ପାଇଁ ଗୋଟିଏ କପର୍ଦ୍ଦକ ମଧ୍ୟ ସମ୍ବଳ ନରଖି କେଉଁ ସାହସରେ ମୋର ଆଚରଣକୁ ଆଜି ସମାଲୋଚନା କରୁଛ ? ଗୋଲାପ ମୂଳରେ ସାର ଦେଲେ ଭଲ କେତେ ଗୋଲାପକୁ ତୁମେ ସାର ଦେଇ ଦେଇ ଆପଣାର କରିବାକୁ ଚେଷ୍ଟା କରିନାହଁ ? ସବୁ ମୁଁ ଦେଖିଛି-ସବୁ ମୁଁ ଶୁଣିଛି-କାହିଁ ଦିନେ ତ ପ୍ରତିବାଦ କରିନାହିଁ ତୁମର ବ୍ୟବହାରରେ-ଆଚରଣରେ ।

—ତା'ର ପ୍ରତିଶୋଧ ନେଉଛ ଆଜ ନୁହେଁ ? ସେଇ ପୁରୁଣା କଥାକୁ ପୁଣି ଟାଣି ଆଣିଛ ଏ ରୋଗଶଯ୍ୟା ପାଖକୁ ।

—ଟାଣି ଆଣିବାକୁ ତୁମେ ମୋତେ ଉତ୍ସାହ ଦେଇଛ-ପ୍ରେରଣା ଯୋଗାଇଛ । ତୁମର ସବୁ ପାପ ପାଇଁ ମୁଁ ତୁମକୁ ସମାଲୋଚନା କରେଁ ଏହା ବୋଧହୁଏ ଏ ଅନ୍ତିମ ବେଳାରେ ଭଗବାନ୍ ଚାହାନ୍ତି ।

—ପୁରୁଷ ପାପ କରେନା-ସବୁ ପାପରେ ନାରୀ ହିଁ ଭାଗୀଦାର । ମୋତେ କେହି କିଛି କହିବେ ନାହିଁ । ତୁମକୁ ସମାଲୋଚନା କରିବେ ।

—କରନ୍ତୁ । ସେଥିପାଇଁ ମୁଁ ବିଚଳିତ ନୁହେଁ ! ମୋର ସ୍ୱାମୀର ଆଉ କିଛି ଦିନ ବଞ୍ଚିବା ନିମନ୍ତେ ମୋ ଭବିଷ୍ୟତ୍ ନିମନ୍ତେ ମୁଁ ଯଦି କାହା ସହିତ ଦୁଇପଦ କଥାବାର୍ତ୍ତା କଲେ ମୋତେ କିଛି ସାହାଯ୍ୟ ମିଳେ, ତା ମୋ ପ୍ରାପ୍ୟଠାରୁ ଆହୁରି ଅନେକ-ସେ ସମ୍ପଦ ମୋର ସ୍ୱାମୀଙ୍କର ଆବିଳତା ପୂର୍ଣ୍ଣ ପ୍ରେମଠାରୁ ଅନେକ ଉର୍ଦ୍ଧ୍ୱରେ । ରୋଗଶଯ୍ୟାରେ ତୁମ ପାଇଁ ଏ ଖାଦ୍ୟ ମୁଁ କେଉଁଠୁ ଯୋଗାଏ, ସେ କଥା ଚିନ୍ତା କରିଛ କେଉଁ ସଞ୍ଚୟର ତହବିଲରୁ ଏ ପଥ୍ୟ, ଏ ଔଷଧ ଆସେ ? ଆଜି ତୁମେ ନିଜର ଗ୍ଳାନି ଦେଖି ଚମକି ଉଠୁଛ କାହିଁକି ?

—ମୋର ବଞ୍ଚିବା ପାଇଁ ଏ ଯେଉଁ ଆୟୋଜନ କରିଛ, ପ୍ରକୃତରେ ମୋର ବଞ୍ଚିବା ଚାହିଁଥିଲେ, ଏତେ ନିମ୍ନକୁ ତୁମେ ଯାଇ ନଥାନ୍ତ....

କଣ୍ଠସ୍ୱର ଦୁର୍ବଳ ହୋଇଯାଉଛି ଦିଗମ୍ବରର ।

କିନ୍ତୁ ପ୍ରତିଜ୍ଞା ଆଜି ଉତ୍ତେଜିତା

—ନାଁ, ତୁମକୁ ବଞ୍ଚାଇବାକୁ ମୁଁ ଚାହିଁନି । ନିଜେ ବଞ୍ଚିବାକୁ ଚାହିଁ ଆଗେଇ ଚାଲିଛି । କିନ୍ତୁ କାହିଁକି ? କାହିଁକି ତୁମେ ଆଜି ବଞ୍ଚିବାକୁ ଚାହୁଁଛ କହିପାରିବ ? ମୋର ଏତେ ସେବା, ଏତେ ଯତ୍ନ ତୁମକୁ ଶାନ୍ତି ଦେଇ ପାରିନି । ତଥାପି ତୁମେ ବଞ୍ଚିବାକୁ ଚାହୁଁଛ । ମରିଯାଇ ପାରୁନାହଁ—ତୁମେ ମରିପାରିଲେ ହୁଏତ ମୁଁ ଆରବରେ ନିଶ୍ଚିନ୍ତରେ ଗୋଟିଏ ଦୀର୍ଘ ନିଃଶ୍ୱାସ ନେଇପାରନ୍ତି ।

କଣ୍ଠନାଳୀ ଶୁଖି ଶୁଖି ଯାଉଛି । ରକ୍ତଚାପ ବଢ଼ି ଚାଲିଛି । ଅନୁଭବ କରି ପାରୁଛନ୍ତି ଦିଗମ୍ବର । ତଥାପି କହୁଛନ୍ତି—

—ମୁଁ ମଲେ ତୁମେ ନିଶ୍ଚିନ୍ତ ହେବ ? ଅସମ୍ଭବ । ମୁଁ ଭୂତ ହୋଇ ତୁମ ପଛେ ପଛେ ସବୁବେଳେ କଷ୍ଟ ଦେଉଥିବ ।

— ବନ୍ଧିଥାଇ ଯେତେ କଷ୍ଟ ଦେଲ ସେଥିରେ ମନ ଓରମାନ ମେଣ୍ଟିଲା ନାହିଁ ? ଆହୁରି ମୋତେ କଷ୍ଟ ଦେବାର ଓ ପ୍ରବଳ ପିପାସା । ଏ ପିପାସା ତ୍ୟାଗ କର । ଭଗବାନଙ୍କ ନାମ ସ୍ମରଣ କର ।

— ତୁମ ମୁହଁରେ ଭଗବାନ ! ହୁଁଃ...

— ଭଗବାନଙ୍କ ନାମ ନିଅ – ମୁକ୍ତି ପାଇଯିବ, ଶାନ୍ତି ପାଇଯିବ ।

— ଭଗବାନ ନାମ ନିଅ ନାହିଁ । ସେଥିରେ କଳଙ୍କ ଲାଗିଯିବ ।

– ଶେଷ ମୁହୂର୍ତ୍ତରେ ତାଙ୍କୁଇ ଚିନ୍ତାକର । ସେଇ ରକ୍ଷା କରିବେ । ଆଉ କେହି ଏ ଜଗତରେ ତୁମର ନୁହନ୍ତି । ତୁମେ ତାଙ୍କୁଇ ଡାକ....ତାଙ୍କୁଇ ଡାକ ।

ପ୍ରତିଜ୍ଞା କଣ ପାଗଳୀ ହୋଇଗଲେ । ସେ କଣ ଭୁଲିଗଲେ ମିନଟ୍ ମିନଟ୍ କରି ବଞ୍ଚାଇ ରଖିବା ପାଇଁ ତାଙ୍କର କେତେ ସାଧନା । ପ୍ରତିଜ୍ଞା କଣ ବିସ୍ମୃତ ହେଲେ ଦିଗମ୍ବର ତାଙ୍କର ସ୍ୱାମୀ...ଜନ୍ମ ଜନ୍ମାନ୍ତରର ସାଥୀ ।

ଦିଗମ୍ବର ନୀରବ । ତାଙ୍କର ଦୁର୍ବଳ ପଞ୍ଜରା ମଧ୍ୟ ଦେଇ ଉଠୁଥିବା କ୍ଷୀଣ ଶ୍ୱାସ ପ୍ରଶ୍ୱାସର ଗତି କଣ ବନ୍ଦ ହୋଇଗଲା ।

ଦରମୁକୁଳିତ କେଶା, ଅର୍ଦ୍ଧଉଲଗ୍ନା ପ୍ରତିଜ୍ଞା କାନ୍ଦୁଥିଲେ ଦିଗମ୍ବରଙ୍କର ନିଥର ନିସ୍ପନ୍ଦ ଶରୀର ଉପରେ । ଅନେକ ଯୁଗର ଅବରୁଦ୍ଧ ସେ ଲୋତକର ସ୍ରୋତ ବହିଚାଲିଛି.....ସେ କାନ୍ଦି ଚାଲିଛନ୍ତି –

ତୁମକୁ ବଞ୍ଚାଇବାକୁ ଯାଇ ତୁମକୁ ମୁଁ ନିଜ ହାତରେ ତଣ୍ଟି ଚିପି ହତ୍ୟା କରିଦେଲି ? ତୁମେ କଣ ମୋତେ କ୍ଷମା କରିବ ? କ୍ଷମା କରିବ ତୁମକୁ ଆଉ କିଛି ଦିନ ପାଖରେ ପାଇବା ପାଇଁ ମୁଁ କରିଥିଲି ଆଜି ଆତ୍ମବିସର୍ଜନ ? କୁହ...କୁହ ମୋର ଦେହ ବିକ୍ରୀ କରି ଯେଉଁ ପଥ୍ୟ ତୁମ ପାଇଁ ଆଣିଥିଲି, ତାକୁ ଗ୍ରହଣ ନକରି ତୁମେ ଚାଲିଗଲ କାହିଁକି ? କାହିଁକି ଯାଇ ପାରିଲନି ଆଉ କିଛିଦିନ ପୂର୍ବରୁ... ପଅରଦିନ କାଲି...??



# ଫେସ୍‌କେଟ୍

ପୂର୍ଣ୍ଣାନନ୍ଦ ଦାନୀ

"ଜୁହାର ଆଜ୍ଞା !..."

ଅନେଇଁଲି ।

ସେ ସକାଳରେ ଥିଲା ଚିଟିଭର ଗୀତ ; ଆକାଶରେ ସେ ପର୍ଯ୍ୟନ୍ତ ଲାଗି ରହିଥିଲା କୌଣସି ସୀମନ୍ତିନୀର ସିନ୍ଦୂର ଛିଟା ଏବଂ ଆକାଶର କାର୍ପେଟ୍‌ରେ ତଥାପି ଥିଲା ସମ୍ଭ୍ରାନ୍ତର ରଙ୍ଗୀନ ନିଶା । ପୁଣି ଆକାଶର ଖେଳ-ପଡିଆରେ ତଥାପି ସକାଳର ପେଣ୍ଡୁଟି ଚଞ୍ଚଳ ହୋଇ ନ ଥିଲା ସେ ପର୍ଯ୍ୟନ୍ତ । ଏଭଳି ଏକ ସକାଳ, ଯେଉଁ ସକାଳରେ ପକ୍ଷୀମାନେ ତଥାପି ସୁସୁର ମାରୁଥିଲେ, ସେ ସକାଳ ମୋ' ପାଇଁ ଥିଲା ନୈମିତ୍ତିକ । ତାହା ପୁଣି ଗ୍ରାମୀଣ ସକାଳ । ସେ ସକାଳ ସହ ଗଛପତ୍ରମାନେ କଥାବାର୍ତ୍ତା କରୁଥିଲେ ମୋ' ନିବାସର ଝରକାପଟେ ।

ଅନେଇଁଲି । କହିଲି "ଜୁହାର" !....

"ମୋତେ ତୁମ୍ଭେ ନାହିଁ ଜାଣ । ମୋର ନାଁ 'ଫେସ୍‌କେଟ୍' । ତୁମ୍ଭର ଘର୍ କେନେ ?"

"ଫେସ୍‌କେଟ୍" ଶୁଣିଲି ନାଁ; ପରଚତ ନାଁ, କଛୁଦନତଲୁ । ସେ ଜଣେ ବର୍ଷିୟସୀ ମହିଳା । ବୟସ ସମ୍ଭବତଃ ପଞ୍ଚାବନ ଷାଠିଏ । ବ୍ୟବସାୟ ମୁଢ଼ି ଓ ଚନାବାଦାମ ବିକିବା । ଗାଁର ଘର ଘର ବୁଲିବା, ସକାଳେ ଅଫିସଗୁଡ଼ାରେ, ସ୍କୁଲ ହଷ୍ଟେଲରେ, କଲେଜ୍ ହଷ୍ଟେଲରେ, ମେସ୍‌ମାନଙ୍କରେ, ଏହିପରି । ବହୁଥର ଶୁଣିଲି ନାଁ ଫେସ୍‌କେଟ୍ । ସେ ନାଁର ଅର୍ଥ ବୁଝି ପାରିନାହିଁ । ସେ ନାଁ ପିତୃମାତୃଙ୍କର ବା ଆଉ କାହାର ଶ୍ରଦ୍ଧାର ସୃଷ୍ଟି, ଜାଣି ପାରିନାହିଁ ।

"ମୋ ଘର ସମ୍ବଲପୁର । ତୁମର ନାଁ ଶୁଣିଛୁ ।"

"ଶୁଣିଛ । ତୁମ୍ଭର ଘର ତ ଆମ୍ଭର ପାଖେ । ମୁଁ ଇନେ ମୁରବି ମୁଁ ଫଲ ବକ୍ସି, ବନ୍ଧୁବନ୍ଧନ୍ ହେଲ୍ଲନ୍ ।"

"ଜାଣିଛୁ ।"

'ଫେସ୍ କେଟ୍' ସାଧାରଣ ଗାଉଁଲୀ ମହିଳାଟିଏ । ଖଣ୍ଡେ ଅଠହାତ ମୋଟା କନ୍ତା ଶାଢ଼ୀ ପରିଧାନ । ଅଳଙ୍କାର ବୋଲି କିଛି ନାହିଁ । ମୁଣ୍ଡବାଳ ମିଶାମିଶି ଧଳାକଳା—ଝୋଟ । ସେଇ ମୁଣ୍ଡ ଉପରେ ବଡ଼ ଟୋକେଇଟିଏ—ଭିତରେ ମୁଢ଼ି ଓ ଚନାବାଦାମ ଭର୍ତ୍ତି । ପାଦରେ ବହୁ ଧୂଳି, ଯେଉଁଥିରୁ ସେ ବହୁ ବାଟ ଚାଲି ଆସୁଛି ଏବଂ ଚାଲିବା ପାଇଁ ବାଧ୍ୟ ।

"ତୁମ୍ଭେ କେମିତି କରି ମୋତେ ଜାଣିଲ ?"

"ଏଇ ଗାଁର ସ୍କୁଲରୁ ପାସ୍ କରି, ଆମ ସହରରେ ଚାକିରି କରୁଥିବା ପିଲମାନଙ୍କଠୁଁ ।"

ଏ ଗାଁର କଲେଜରେ ଅଧ୍ୟାପକ ଭାବରେ ଯୋଗଦେବା ପୂର୍ବରୁ, ଗାଁ ସମ୍ପର୍କରେ ମୋର ବହୁ ପଚରାପଚରି, ଖବର ରଖାରଖି । ପୁଣି ପଚାରିବା, ଗୋଟେ ଗାଁରେ କିପରି ଗଢ଼ି ଉଠିଲା କଲେଜଟିଏ ? ଗାଁଟିର ଭୂଗୋଳ, ସ୍ୱାସ୍ଥ୍ୟ, ମାଟି, ପାଣି, ଜନବସତି, ରାସ୍ତାଘାଟ, ଯୋଗାଯୋଗ, ଘରଦ୍ୱାର, ଲୋକବାକ, ଅଫିସ ପ୍ରମୁଖ, ଚିକିତ୍ସା ସୁବିଧା, ଡାକଘର ଇତ୍ୟାଦି ଇତ୍ୟାଦି ସମ୍ପର୍କରେ ବହୁ ବିବରଣୀ ପ୍ରାପ୍ତ ହେବାର ମୋର ବହୁ ଚେଷ୍ଟା । ଗାଁର ଇତିହାସ ମଧ୍ୟ ଜାଣି ଉଠେ ମୋର ସମ୍ବାଦ ସଂଗ୍ରହ ଭିତରେ । ସେ ଇତିହାସର ଏକ ପ୍ରାଚୀନ ଓ ଚଳନ୍ତି ପ୍ରମାଣ 'ଫେସ୍ କେଟ୍'—ବର୍ଷୀୟସୀ ମହିଳା, ଯା'ର କଳା ମୁହଁ ଉପରେ ନର୍ଦ୍ଦିଷ୍ଟ କାଳଟା ବହୁ ଅତ୍ୟାଚାର କରି ଚାଲିଛି ।

ସେଇ ନାରୀର କେବଳ ମୁହଁ ନୁହେଁ, ସମଗ୍ର ଶରୀର କହେ ଗାଁର ଇତିହାସ, ଭୂଗୋଳ, ଉତ୍ଥାନ ପତନ, ଉନ୍ନତି ଅବନତି । ସେଇ 'ଫେସ୍ କେଟ୍,' ମୁଢ଼ି ବିକାଳି ନାରୀଟିକୁ ନମସ୍କାର କରିବାର ଇଚ୍ଛା ହେଉଥିଲା ସକାଳର ଡାହାଣିଆ ଖରାକୁ ପିଠି କରି । ଅଥଚ ମୋ' ଛାତି ଭିତରେ ସଂଗୁପ୍ତ ଥିବା ହୃଦୟଟିକୁ ଢାଙ୍କି ରଖିଛି 'ଚାକିରି' ନାମକ ସମ୍ମାନୀୟ ବହୁ ମୂଲ୍ୟର କୋଟ୍ଟିଏ । ସେଇ ସକାଳେ, 'ଫେସ୍ କେଟ୍' ବୁଢ଼ୀଟିକୁ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିବାର ଅବକାଶ ଥିଲା ଯଥେଷ୍ଟ । ମୋ' ହାତରେ ଥିଲା ସେତେବେଳେ ଟୁଥ୍-ବ୍ରସ୍, ଯେଉଁ ବ୍ରସ୍ କ ମୋ' ଦାନ୍ତମାନଙ୍କୁ ଅଧିକ ଉଜ୍ଜ୍ୱଳ କରୁଥିବା ଚାକଚକ୍ୟ ଚାକିରିଟିଏ ମାତ୍ର ।

"ବାବୁ ଚ୍‌—।" ପଣି ଆସିଲା ବିଭୀଷଣ, ପାଖ ହୋଟେଲ୍‌ ବୟ୍‌। ହାତରେ ଚ୍‌ କପ୍‌। ମୋର ଏଠିକି ଆସିବା ପରେ ତା'ର ନିତ୍ୟ କାମ ହେଲା ସକାଳୁ ମୋତେ ବେଡ଼୍‌ ଟି, ଯୋଗାଇବାର। ମୁଁ ବିଭୀଷଣକୁ ଚାହିଁଲି ଓ ତା' ହାତର ଗରମ ଚ୍‌କୁ ଏବଂ ଥରେ 'ଫେସ୍‌ କେଟ୍‌'ର ମୂର୍ତ୍ତି ଦୋହଲୁ– ଦୁଇଟି ଭିନ୍ନ ବସ୍ତୁ। ଗୋଟେ ସଦ୍ୟ ଅଥଚ କ୍ଷଣକ ଭିତରେ ଶୀତଳ ହେବାର ପ୍ରଚୁର ସମ୍ଭାବନା ଏବଂ ଅନ୍ୟଟି ପ୍ରାଚୀନ, ଅଥଚ ଶୀତଳ ହେବାର ସ୍ୱଳ୍ପ ସମ୍ଭାବନା।

ବିଭୀଷଣ ଚ୍‌ କପ୍‌କୁ ଥୋଇ ଦେଇ ଚାଲିଗଲା।

"ଜାଣିଲେ ଆଜ୍ଞା, ଇଏ ଯେତେବେଳେ କଲେଜ ନାହିଁ ଥିଲା, ସ୍କୁଲ ଥିଲା, ସେତେବେଳେ ଚ୍‌ହାର, ଦେଖାଭି ନାହିଁଥାଇ।"

"ଜାଣିଛି।"—ମୋର ଉତ୍ତର। 'ଫେସ୍‌ କେଟ୍‌' ବୁଢ଼ୀ ମୂର୍ତ୍ତି ଦେବାର ଆରମ୍ଭ କରିଥିଲା ମୋ' ଟାଓ୍ୱେଲ୍‌ ଉପରେ, ମୋର ଇଙ୍ଗିତରେ।

'ଫେସ୍‌ କେଟ୍‌' ନାମକ ନାରୀଟି ଏକ ଇତିହାସ—ବିଗତ ପଇଁତିରିଶ ଚାଳିଶ ବର୍ଷର ଏକ ଚଳନ୍ତି ଇତିହାସ। ସେ ଯେତେବେଳେ ଆସିଲା ଏ ଗାଁକୁ ନୂଆବୋହୂ ହୋଇ, ସେତେବେଳେ ତାର ବାହାବେଳକୁ ବାଜି ନ ଥିଲା ରେକର୍ଡ଼ ପ୍ଲେୟାର। ସେତେବେଳେ ସେ ଆସି ନ ଥିଲା ଟ୍ରେନ ବା ଟ୍ୟାକ୍‌ସିରେ ବଧୂ ବେଶରେ। କିନ୍ତୁ ସେ ଆସିଥିଲା ବଳଦ ଗାଡ଼ିରେ। ଏ ଗାଁକୁ ଲମ୍ବି ଆସିଥିବା ରାସ୍ତାରେ ଥିଲା ବହୁ କାଦୁଅ। ଏ ରାସ୍ତା ଉପରେ ସେତେବେଳେ ଗର୍ଜୁ ନ ଥିଲା ଟ୍ରାକ୍‌ଟର ବା ମୋଟର-ବାଇକ୍‌। ଏ ରାସ୍ତା ଉପରେ ନ ଥିଲା ପେଣ୍ଟକାମିଜ୍‌ ପିନ୍ଧିଥିବା ଅଦ୍ଭୁତ ମଣିଷ-ମାନଙ୍କର ମୁଖଦର୍ପଣମାନ ଏବଂ ଏ ଗାଁରୁ ସେତେବେଳେ ତେଲକଳ, ଧାନକଳ ଇତ୍ୟାଦିର କଳକାରଖାନାମାନଙ୍କରୁ ଆକାଶକୁ ଛୁଉଁ ନ ଥିଲା କଳା ଓ କଦର୍ଯ୍ୟ ଧୂଆଁ। ବରଂ ଢେଙ୍କିର ଶବ୍ଦ ଶୁଭୁଥିଲା ସେତେବେଳେ ପ୍ରାକ୍‌ସକାଳର ଅନ୍ଧାରୁ ଘର ଭିତରୁ। ଏ ଗାଁରେ ନ ଥିଲା ଡାକ୍ତରଖାନା ବା ଡାକଖାନା। ନ ଥିଲା ସେଲୁନ ବା ହୋଟେଲ। ନ ଥିଲା ଦୋକାନ ବା ବଜାର। କିଶୋରୀ ଝିଅମାନେ ପିନ୍ଧି ଜାଣି ନ ଥିଲେ ସ୍କାର୍ଟ। କିଶୋର ପୁଅମାନେ ରାସ୍ତା ଉପରେ ଗାଇ ଜାଣୁ ନ ଥିଲେ ସିନେମାର ଗୀତ। ଏହିପରି ଅନେକ ଅନେକ। 'ଫେସ୍‌ କେଟ୍‌' ସେଇ ପରିବର୍ତ୍ତନ-ପୁସ୍ତକର ପଠିତ ହୋଇଥିବା ପୃଷ୍ଠାମାନ। ତେଣୁ ସେ ମୋତେ ଜଣେଇ ଦେଉଥିଲା ଯେ ଚ୍‌ ଏକ ନବାଗତ ପଦାର୍ଥ।

ସେ କଥା ଜଣାଇବା ତା' ପକ୍ଷରେ ସ୍ୱାଭାବିକ। ମାତ୍ର ସେ ଜଣାଇବା ପୂର୍ବରୁ ଅବଶ୍ୟ ମୁଁ ଅନୁଭବ କରି ପାରୁଥିଲି ଏ ବଦଳାବଦଳି। ଫେସ୍‌ କେଟ୍‌

ମୁଡ଼ି ମାପି ସାରିଥିଲା ତା'ର ନଡ଼ିଆ କାଛିରେ ଏବଂ ମୋତେ ପୁଣି ଥରେ ପଚାରି ନେଲା—'ମୁଁଗ୍ ଫଲ ଦେମି ?''

''ଦିଅ ।''—ସେତେବେଳେ ମୋ'ର ପରିଷ୍କୃତ ହୋଇ ସାରିଥିବା ଜିଭ ଓ ଦାନ୍ତମାନଙ୍କ ସହିତ ବନ୍ଧୁତା କରୁଥିଲା ଗରମ ଚା' ଏବଂ ମୋ' ଲୋଭି ଜିଭ ଖଣ୍ଡିକ ମୁଡ଼ି ଓ ଚନାବାଦାମମାନଙ୍କୁ ରସାଣିତ କରି ନେବାର ଆଗ୍ରହରେ ଧୈର୍ଯ୍ୟ ହରାଉଥିଲା କ୍ରମଶଃ ।

''ତୁମ୍ ହର ଇନର୍ ଅଉ ବାବୁମାନେ ମୁର୍ହି ନାହିଁ ଲିଅନ୍ କାଁ ?''

''ରହିି, ପଚାରୁଛି ।''— ସେତେବେଳେ ଏ ଘରେ ରହୁଥିବା ମୋ' ଅନ୍ୟ ଚାରିଜଣ ଅଧ୍ୟାପକ ବନ୍ଧୁ ତଥାପି ହୁଏତ ଜାଣିପାରି ନ ଥିଲେ ଯେ, ସକାଳ ଏ ଗାଁର ଅଧିକାଂଶ ବ୍ୟକ୍ତିମାନଙ୍କୁ କର୍ମାଭିମୁଖୀ କରି ସାରିଛି । ତେଣୁ ସେମାନଙ୍କର କବାଟ ବାଡ଼େଇ ପଚାରିବାକୁ ହେଲା, ''ଆଜ୍ଞା, ଆପଣ ମୁଡ଼ି ନେବେ ?''

''ହେଃ, ଛାଡ଼ନ୍ତୁ, ସକାଳୁ ସକାଳୁ ମୁଡ଼ି; ବାଜେ କଥା ।''—ଭିତରୁ ଉତ୍ତର ।

ଅଗତ୍ୟା ବାଧ୍ୟ ହୋଇ, ଅନ୍ୟ ଅଧ୍ୟାପକ ବନ୍ଧୁଙ୍କୁ ସେଇ ପ୍ରଶ୍ନ ଏବଂ ଉତ୍ତର ଭିତରୁ—''ଯାଃ, ମୁଡ଼ି କିଏ ହେବ ? ଚା' ତିଆରି ହେଲାଣି ତ ?'' ଏହିପରି ବିରକ୍ତିକର ଉତ୍ତରମାନ । 'ଫେସ୍‌କେଟ୍' ସବୁ ଶୁଣିଲା ଏବଂ ସଜାଇ କରିବାକୁ ଲାଗିଲା ନିଜର ସଯତ୍ନ-ସମ୍ବର୍ଦ୍ଧିତ ବୋଝଟିକୁ ।

ମୁଁ ଦୁଃଖ ପ୍ରକାଶ କରି କହିଲି—''ଏ'ଠି ସମସ୍ତଙ୍କର ଚା' ଅଭ୍ୟାସ ।'' 'ଫେସ୍‌କେଟ୍' ବୋଝ ମୁଣ୍ଡେଇ ସାରିଥିଲା । ସେତେବେଳେ ସେ ବୋଝ ମନେ ହେଉଥିଲା ଏକ କୁହୁକ ପେଡ଼ି ଭଳି; ଯା'ର ଭିତରେ ଲୁଚି ରହିଛି କୌଣସି ଏକ ଅଦ୍ଭୁତ ବସ୍ତୁ, ଯେଉଁ ବସ୍ତୁ କ୍ଷଣକରେ ସ୍ୱରୂପ ବଦଳାଇବାର ରୂପକ । କିମ୍ବା ସେ ବୋଝଟି ସତେ କି ପ୍ରାଗ୍ ଐତିହାସିକତାର ଏକ ମଜଭୁତ ଦୁର୍ଗ । କିମ୍ବା ସେ ବୋଝ ଏକ ନିତ୍ୟ ନୂତନ ସମ୍ବାଦ ଓ ଯା' ଭିତରେ ଘୋଡ଼ିଘାଡ଼ି ହୋଇ ଶୋଇ ପଡ଼ିଛି 'ପ୍ରାଚୀନ' ନାମକ ଜନ୍ତୁଟି ।

ଫେସ୍‌କେଟ୍‌କୁ ଚାରିଅଣା ପଇସା ଧରାଉଥିଲି । ସେ ବୁଢୀ ଡ଼ାହାଣ ହାତରେ, ଚାରଣିଟିକୁ ମୁଠେଇ ନେଇ କହୁଥିଲା —''ତୁମ୍ ହର କଲେଜ୍ ହଷ୍ଟେଲ୍‌ର ପିଲମାନେ ଆଉ କାଇଛେ ମୁର୍ହି ଘେନୁଛନ୍ ଯେ—!''—ତା'ର ଏଇ କଥାର ପ୍ରତିଶବ୍ଦମାନଙ୍କରେ ଯେପରିକି ଝୁଲି ପଡ଼ୁଥିଲେ ହତାଶାର ଓହଳମାନେ ।

"ନାଇଁ, ନାଇଁ କଣିବେ ସେ ! ବର୍ଷାମାସରେ ବହୁତ କଣିବେ ।"— ମାଝ ମୋର ଏ ଶବ୍ଦମାନଙ୍କୁ ଫେସ୍‌କେଟ୍ ହୁଏତ ବୁଝି ପାରୁଥିବ ଯେ, ଏହା ଆଶ୍ୱାସନାର ଅଯଥା ନାନାବାଦ୍ୟ ଗୀତମାନ ।

"କିନ୍ତୁ, ଦେଖ, ବେଳେ ବେଳେ ମୋ ଝକଟକୁ ମୁଢ଼ି ଆଣୁଥିବ ।"

"ହୁଁ !....." କହି ସେ ବୁଢ଼ୀ ଦ୍ୱାରବନ୍ଧ ପାର ହେଉଥିଲା ସତର୍କରେ । ତା' ମୁଣ୍ଡ ଉପରେ ମୁଢ଼ି ଓ ଚନାବାଦାମ ଆଶ୍ରୟ ନେଇଥିବା ଝପଦ ବୋଝଟି ଶୋଭା ପାଉଛି କୌଣସି ମହାରାଣୀଙ୍କ ଉପରେ ଟେକ ହୋଇଥିବା ପାଟଛତା ଭଳି ଏବଂ ସେଇ ମହାରାଣୀ ଚାଲିଯାଉଛି ଝୁଲ ଝୁଲ ଜନସ୍ତ ରାଜରାସ୍ତା ଉପରେ । ତାକୁ ନମସ୍କାର କରିବାର ବାରମ୍ବାର ଇଚ୍ଛା ହେଉଛି । କିନ୍ତୁ ମୋ' ଗୁଡକୁ ଜାକ ଧରିଥିବା ସମ୍ମାନାସ୍ପ ବହୁମୂଲ୍ୟ 'ପଦବୀ' ନାମକ ବହୁମୂଲ୍ୟ କୋଟ୍‌ଟି ମୋର ହାତ ଦୁଇଟିକୁ ଟାଣି ନେଉଛି ତା'ର ଦୁଇ ପକେଟ୍ ଆଡ଼କୁ ଏବଂ ହଠାତ୍ ସେଇ ମୁହୂର୍ତ୍ତରେ ସେଇ ମହାରାଣୀଙ୍କର ପାଟଛତାଟି ରୂପାନ୍ତରିତ ହୋଇଯାଉଛି ମୁଢ଼ି ଓ ଚନାବାଦାମର ସତ ବୋଝ ରୂପେ, ଯେଉଁ ବୋଝ ଭିତରେ ଏକ ଅଦ୍ଭୁତ ଜୀବ ଲୁଚି ରହିଛି, ଯାହାକୁ ଦେଖିବାର ଇଚ୍ଛା କ୍ରମଶଃ ଅଧିକ ଅଧିକ ହେଉଛି ମୋର ।

ତା'ପରେ ସେଇ ରଙ୍ଗୀନ ସକାଳ ବି ପରିବର୍ତ୍ତିତ ହୋଇଯାଇଛି ଏଇ ଅବସରରେ । ସେଇ ସକାଳ, ଯିଏ କିଛି କ୍ଷଣ ପୂର୍ବେ, ନାଲି ଫୁଲମାନଙ୍କୁ ମକ୍‌ଚ ଦେଉଥିଲା, ବର୍ତ୍ତମାନ ସଫାସୁତୁରା ହୋଇ ଧଳା ସୁଟ୍ ପିନ୍ଧି ଚକ୍ ଚକ୍ କରୁଥିବା ମଣିଷଟିଏ ଏବଂ ଜଣେ ଗମ୍ଭୀର ସାହେବ ଭଳି ସେ ଠିଆ ହୋଇ ମୁହଁରେ ଚରୁଟ୍ ଧରି ମୃଦୁ ହସି ପାରୁଛି । କିନ୍ତୁ ସେ ସାହେବର ଧଳା କୋଟ୍ ତଳେ କଣ ଅଛି, ଅବଶ୍ୟ ଜଣାପଡ଼ୁ ନାହିଁ । ସେ ସମ୍ପର୍କରେ ହୁଏତ କଥାବାର୍ତ୍ତା କରୁଛନ୍ତି ମୋ' ନିବାସ ବାହାରେ ଥିବା ଗଛପତ୍ରମାନେ ।

...ଏବଂ ଏଇ ଅବକାଶରେ ମୋ' ପାଖ ରୁମ୍‌ରେ ଥିବା ଅଧ୍ୟାପକ ବନ୍ଧୁ କବାଟଟି ଧଡ଼ାସ୍ କରି ଖୋଲି ପଚାରୁଛନ୍ତି—"ଧେତ୍, ସକାଳୁ ସକାଳୁ ଆପଣ ନିଦ ଭାଙ୍ଗି ଦେଲେ । ଆରେ, ଏତେ ଖରା ପଡ଼ିଲାଣି ! ଯାଃ... । ଚା' ପିଇଲେଣି ତ !..."

ସେତେବେଳକୁ 'ଫେଯ୍‌କେଟ୍' ବୁଢ଼ୀର ମୁଣ୍ଡ ଉପରେ ଶୋଭା ପାଉଥିବା କୁହୁକ ଟୋକେଇଟି ଅଦୃଶ୍ୟ ହୋଇ ଯାଉଥିଲା, ମୋ' ଦୃଷ୍ଟିର କଚା ରାସ୍ତା ଉପରୁ ।

●

# ସୁନା ମେଡଲ୍

ଶ୍ରୀ ମନୋଜ ଦାସ

ପଶ୍ଚିମରେ ମେଘମାନେ ଦିଶୁଥିଲେ ଉଦ୍ଧତ । ଥରେ ଥରେ ଉଜ୍ଜ୍ୱଳ କମଳା ରଙ୍ଗର ସୂର୍ଯ୍ୟାଲୋକ ମେଘମାନଙ୍କୁ ଠେଲ ଦେଇ ବାହାରି ପଳାଇ ଆସି କୃଷ୍ଣଚନ୍ଦ୍ରଙ୍କ ମୁହଁ ଉପରେ ଓଜାଡ଼ ହୋଇ ପଡୁଥିଲା । ମୁଖମଣ୍ଡଳରେ ବାର୍ଦ୍ଧକ୍ୟର ସମସ୍ତ କଳା ପାହାଡ଼ୀୟ ଉତ୍ପାତ ସତ୍ତ୍ୱେ ସେ ଦିଶୁଥିଲେ ସୁନ୍ଦର ।

ତେବେ ସୂର୍ଯ୍ୟ ପ୍ରକଟିତ ହେବା ଓ ଲୁଚିଯିବା ସହ ପ୍ରାୟ ତାଳ ରଖି ସେ ପୁଲକିତ ଓ ବିମର୍ଷ ବୋଧ କରୁଥିଲେ । ସେକଥା ଅବଶ୍ୟ ଜୟ ଜଗନ୍ନାଥ ଯାତ୍ରା ପାର୍ଟିର ଅନ୍ୟ ସଭ୍ୟମାନେ ବୁଝିବାର ସମ୍ଭାବନା ନ ଥିଲା ।

ନୌକା ଅପେକ୍ଷାକୃତ ଧୀର ଗତିରେ ଅଗ୍ରସର ହେଉଥିଲା । ଯାତ୍ରାଦଳର ସାଜ ସରଞ୍ଜାମ କମ୍ ନୁହେଁ । ନୌକାର ଓଜନ ଅନୁଭବ କରୁଥିଲେ ଦୁଇ ଆହ୍ଲାଦାର ।

"ବାବୁ, କାହିଁ କେତେ ଯୁଗତଳେ ତମେ ଆମ ଗାଁରେ, ଚୌଧୁରୀଙ୍କ ଅଗଣାରେ ଅଭିନୟ କରୁଥିଲ !" ମାଝି ହଠାତ୍ ଉଚ୍ଛ୍ୱସିତ କଣ୍ଠରେ କହିଲା ।

"ହଁ । ଚାଳିଶ ବର୍ଷ ତଳେ ।"

"ମୋ ବୟସ ସେତେବେଳେ ଦଶ ବାର । ହେଲେ ଏବେ ବି ମୋ ଆଖି ଆଗରେ ତମର ସେ ରୂପ ଭାସୁଛି । ରାମଚନ୍ଦ୍ର ହୋଇଥିଲ । ଆହା ! ଅପୂର୍ବ ଦିଶୁଥିଲ ।" ମାଝି ପୁଣି ଉଚ୍ଛ୍ୱସିତ ଶୁଭିଲା ।

କୃଷ୍ଣଚନ୍ଦ୍ର ମୃଦୁ ଭାବରେ ଥରେ ହସିଲେ । ସେ ଅନାଇଥିଲେ ସୂର୍ଯ୍ୟ ଆଡ଼େ । ଭାସି ଯାଉଥିଲା ଖଣ୍ଡିଏ ବାସି ମଲ୍ଲିହାର ।

ଶୀତଳ ପବନରେ ମାଝିର ସେ ମନ୍ତବ୍ୟ ବଡ଼ ସୁଖକର ଲାଗିଥିଲା । ଯେକୌଣସି ଅଭିନନ୍ଦନ ପାଇବା ମାତ୍ରେ କୃଷ୍ଣଚନ୍ଦ୍ର ପରଲୋକଗତ ଗୁରୁଙ୍କୁ ସ୍ମରଣ କରି ତାଙ୍କ ଉଦ୍ଦେଶ୍ୟରେ ଯୋଡ଼ହସ୍ତ କପାଳରେ ଛୁଆଁଇଥାନ୍ତି । ତାହାହିଁ କଲେ ।

ଏକଦା ଖଣ୍ଡମଣ୍ଡଳରେ ଅଦ୍ୱିତୀୟ ଓସ୍ତାଦ୍ ଗୁରୁହିଁ ଲେଖିଥିଲେ ସେ ନାଟକ —'ଜନକନନ୍ଦିନୀ' । ସେତେବେଳେ ଗୁରୁଙ୍କ ଉଦାର ବାଧା ସ୍ୱପ୍ନଡାହିଁ ଥିଲା କଳା ଶିକ୍ଷାର ସହଜ ମାର୍ଗ ।

ଦୀର୍ଘକାଳ ଆଖଡ଼ା ପରେ ଯେଉଁ ରାତିରେ ପ୍ରଥମେ 'ଜନକନନ୍ଦିନୀ' ପରିବେଷିତ ହେଲା—ଚୌଧୁରୀଙ୍କ ଅଗଣାରେ—ସେ ରାତି ସଜୀବ ରହିଛି କୃଷ୍ଣଚନ୍ଦ୍ରଙ୍କ ସ୍ମୃତିରେ । ସୀତାଙ୍କ ପାତାଳ ପ୍ରବେଶ ବେଳେ ସେ ଯେତେବେଳେ ଯୁଗ୍ମବାହୁ ପ୍ରସାରି କରି ଆର୍ତ୍ତନାଦ କରିଥିଲେ; "ମୋତେ ପରିତ୍ୟାଗ କରି ଚାଲିଯାଅ ନାହିଁ ଜନକନନ୍ଦିନୀ—ଜନକନନ୍ଦିନୀ !" ସେତେବେଳେ ସହସ୍ର ନୟନରୁ ବହି ଆସିଥିଲା ଅଶ୍ରୁ । ନାଟକ ସମାପ୍ତ ହୁଅନ୍ତେ ତତ୍କାଳୀନ ଜମିଦାରଙ୍କ ପୁଅ—ତାଙ୍କର ବୟସର ତରୁଣ—ନନ୍ଦନ ଚୌଧୁରୀ ତାଙ୍କୁ କହିଥିଲେ, "ବୁଝିଲୁ କୃଷ୍ଣ, ତୁ ସୁନା ମେଡ଼େଲ୍ ପାଇବା ଉଚିତ !"

ଶିହରି ଉଠିଥିଲେ କୃଷ୍ଣଚନ୍ଦ୍ର । ସୁନା ମେଡେଲ୍‌ର ପ୍ରତିଶ୍ରୁତି ନିର୍ମଳ ଆକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ରର ଦ୍ୟୁତି ଭଳି ତାଙ୍କ ମନକୁ ଝଲସାଇ ଦେଇଥିଲା । ସେ ତେଣିକି ମନପ୍ରାଣ ଢାଳି ଅଭିନୟ କରିଥିଲେ ଏବଂ ଗୁରୁଙ୍କ ନିର୍ଦ୍ଦିଷ୍ଟ ମାନଦଣ୍ଡରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ତାଙ୍କ ସୁଯୋଗ୍ୟ ହସ୍ତରେ ଯାତ୍ରାଦଳର ଭାର ଅର୍ପଣ କରି ଗୁରୁ ପ୍ରାଣତ୍ୟାଗ କଲେ । ଦଳର ସଙ୍ଗଠନରେ ମନୋନିବେଶ କରି କୃଷ୍ଣଚନ୍ଦ୍ର କ୍ରମେ ଅଭିନୟରୁ ଓହରି ଯିବାକୁ ବାଧ୍ୟ ହେଲେ । କେବେ କେମିତି ଗୋଟାଏ ଗୋଟାଏ ଶ୍ରେଷ୍ଠ ଅଥଚ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇ ସେ ପ୍ରଚୁର ବାହାବା ପାଉଥିଲେ । କିନ୍ତୁ ପଦକମାନ ମିଳୁଥିଲା ମୁଖ୍ୟତଃ ନାୟକ ଓ ମୁଖ୍ୟ ଭୂମିକାର ଅଭିନେତାମାନଙ୍କୁ । ସେସବୁ ଅବଶ୍ୟ ଥିଲା ରୌପ୍ୟପଦକ ।

ପୂର୍ବବର୍ତ୍ତୀ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଥରେ ମାତ୍ର ତାଙ୍କ ଗୁରୁ ସୁନା ମେଡ଼େଲ୍ ପାଇଥିଲେ ବୋଲି ଜନଶ୍ରୁତି କହେ—ଅନ୍ୟ ମୁଲକର ରାଜା ଉପାଧିଧାରୀ ଜଣେ ଜମିଦାରଙ୍କ ଠାରୁ । କୃଷ୍ଣଚନ୍ଦ୍ର ସେ ବସ୍ତୁ ଦେଖି ନାହାନ୍ତି । କିନ୍ତୁ ଜନଶ୍ରୁତିକୁ ଜନପ୍ରିୟ କରିବା ଦିଗରେ ଜଣେ ବିଶ୍ୱସ୍ତ ଶିଷ୍ୟ ହିସାବରେ ତାଙ୍କର ଅବଦାନ ସେ ଦେଇଛନ୍ତି ।

"ବାବୁ ! ରୁଦ୍ର ଚୌଧୁରୀ ବଞ୍ଚିଥିଲେ ଆଜି କେତେ ଖୁସି ହୋଇଥାନ୍ତେ !" ମାଝି ମନ୍ତବ୍ୟ ଦେଲା ।

"ହଁ, ନାଟକ ସଙ୍ଗୀତ ପ୍ରତି ତାଙ୍କର ବହୁତ ଅନୁରାଗ ଥିଲା । ସେକାଳରେ ଆମମାନଙ୍କୁ ପୋଷିବା ବାଟରେ ସେ କମ୍ ଖର୍ଚ୍ଚ କରିଛନ୍ତି !" କୃଷ୍ଣଚନ୍ଦ୍ର କହିଲେ ।

"ଆମ ନନ୍ଦନ ଚୌଧୁରୀଙ୍କର ଯେ ଅନୁରାଗ ନାହିଁ, ତା' ନୁହେଁ, ହେଲେ ତାକତ୍ କାହିଁ !" ମାଝିର ସ୍ୱରରେ ଥିଲା ସହାନୁଭୂତି ଓ ଭଙ୍ଗୀରେ ବେଦନା ।

କୃଷ୍ଣଚନ୍ଦ୍ର ସମର୍ଥନସୂଚକ ଭାବରେ ହାତ ହଲାଇଲେ । ଜମିଦାରୀ ଗ୍ଭଲିଗଲା । ନନ୍ଦନ ଚୌଧୁରୀ କ୍ରମେ ଦଆଳିଆ ହୋଇଗଲେ । ତେବେହେଲେ ବାପା ଭଲି; ନର୍ଦ୍ଦୋଳକ ବାପା ଭଲି । ଢଙ୍ଗଢାଙ୍ଗ ବି ସେମିତି । ଫଳରେ, ଯେଉଁମାନେ ରୁଦ୍ର ଚୌଧୁରୀଙ୍କୁ ଜାଣିଥିଲେ, ସେମାନଙ୍କ ଆଗରେ ନନ୍ଦନ ଚୌଧୁରୀ ତାଙ୍କ ଅସହାୟ ପ୍ରେତଟି ଭଳି ଦୋହଲୁଥାନ୍ତି । ପ୍ରେତର ବକ୍ତବ୍ୟ ଥାଏ, ଭାଷା ନ ଥାଏ ।

"ତା' ଛଡ଼ା ସେ ତ ନିଜ ଆୟତ୍ତରେ ବି ନାହାନ୍ତି !" ମାଝି ସାମାନ୍ୟ ମଙ୍ଗ ମୋଡ଼ିବା ଅବସରରେ କହିଲା ।

ନୌକା କୂଳକୁ ଲାଗି ଆସୁଥିଲା । ଅଶ୍ୱତ୍ଥ ଗଛ ତଳେ ବାଳକ ତଥା କୋଳାରୂଢ଼ ଅଜ୍ଞାନ ଶିଶୁମାନଙ୍କୁ ମିଶାଇ କୋଡ଼ିଏ ସରିକି ଗ୍ରାମବାସୀ ତାଙ୍କୁ ପାଛୋଟି ନେବାକୁ ଅପେକ୍ଷା କରିଥିଲେ । ଅଦୂରବର୍ତ୍ତୀ ଝଙ୍କା ବରଗଛ ଗହଳରୁ ତିନିଗ୍ଭରି ଗୋଟି ମାଙ୍କଡ଼ କୁ କୁ କୁ କୁ କରି ଅନାଇଥିଲେ ।

ତନ୍ଦ୍ରା ମୁହଁମାନଙ୍କରେ ହସ ଚହଲୁ ଥିଲା ।

"ଆସ ଆସ କୃଷ୍ଣବାବୁ, ସକାଳେ ମେଘର ଆଡ଼ମ୍ବର ଦେଖି ଆମେ ତ ଭଡ଼କି ଯାଇଥିଲୁ । କିନ୍ତୁ ମା କାଳିକାଙ୍କ କୃପା ଅଛି । ପଶ୍ଚିମରୁ ଏଇ ଖଣ୍ଡିକ ମିଳେଇଗଲେ ଗଲା ।" କହିଲେ ବୟୋବୃଦ୍ଧ ମଣିଦାସ ଅତୀତରେ ଚୌଧୁରୀଙ୍କ ଗୁମାସ୍ତା । ତାଙ୍କ ପେଟର ଆକାରରୁ ଜଣାପଡ଼େ ଉତ୍ତରାଧିକାରୀମାନେ ସୁପୁଷ୍ଟ ହୋଇଥିଲେ ଆଗାମୀ ତିନିପୁରୁଷ ପର୍ଯ୍ୟନ୍ତ ସେମାନେ ବି ପେଟର ସେହିପରି ଆଭିଜାତ୍ୟ ବଜାୟ ରଖି ପାରିବେ ।

ଆହୁରି କେତେଜଣ ବଧେଇ ଜଣେଇଲେ ଉଚ୍ଚୁମ ଭାଷାରେ । କୃଷ୍ଣଚନ୍ଦ୍ର ସମସ୍ତଙ୍କୁ ନମସ୍କାର କଲେ । କିନ୍ତୁ ତାଙ୍କ ଦୃଷ୍ଟି ଭିତରଯାକ ହଠାତ୍ ଅସ୍ଥିରା

ହୋଇଯାଇ ଥାଏ । ସେଥିପାଇଁ ଡାଏରୀ ମାର୍ଜିନ୍‌ର ସେ ଶେଷ ବକ୍ତବ୍ୟ : ନନ୍ଦନ ଗ୍ରେଧୁଲି ନିଜ ଆସ୍ଥାରେ ନାହାନ୍ତି ।

ମାସକ ତଳେ ଯେତେଥର କୃଷ୍ଣଚନ୍ଦ୍ର ଗ୍ରେଧୁଲିଙ୍କୁ ସାକ୍ଷାତ୍ କରିଥିଲେ, ସେତେବେଳେ ବି ଗ୍ରେଧୁଲି ସେମିତିଏ ଭଳି ଗୁମ୍ ହୋଇ ବସିଥିଲେ । କିନ୍ତୁ ସୁନା ମେଡ଼େଲର ଅଦମ୍ୟ ନିଶାରେ ମତ୍ତ କୃଷ୍ଣଚନ୍ଦ୍ର ଗ୍ରେଧୁଲିଙ୍କ ଅଫିମ-ଜନିତ ନିଶାପ୍ରତି ଯଥେଷ୍ଟ ଗୁରୁତ୍ୱ ଦେଇନଥିଲେ ।

ବନ୍ଧୁ ବାନ୍ଧବଙ୍କର ସୁନାମୁଦଟିଏ ସହ ସଞ୍ଚିତ ତିନିଶହ ଟଙ୍କା ଯୋଗ କରି ବି ଯଥେଷ୍ଟ ହୋଇନଥିଲା । ବଣିଆକୁ ଏବେ ବି ପଚିଶ ଟଙ୍କା ଦେବାର ଅଛି । ତେବେ ମେଡ଼େଲ୍‌ର ଗଠନ ସୁନ୍ଦର ହୋଇଥିଲା । ଦିଶୁଥିଲା ବେଶ ବଡ଼ । ମେଡ଼େଲର ସେ ଉତ୍ତମ ଆକାର ପ୍ରକାର ଅବଶ୍ୟ ଉପୁରି ସନ୍ତୋଷ । ନନ୍ଦନ ଗ୍ରେଧୁଲି ପରେ ଜନସମକ୍ଷରେ ତାଙ୍କୁ ସୁନା ମେଡେଲ ଦେବେ, ଏହାହିଁ ହେବ ତାଙ୍କ କଳାକାର ଜୀବନର ମହାନ୍ ପରିଣତି । ରୁଦ୍ର ଗ୍ରେଧୁଲିଙ୍କ ଦାୟାଦ ପରିବର୍ତ୍ତେ ଅନ୍ୟ କାହା ହାତରୁ ସୁନା ମେଡେଲ ଗ୍ରହଣ କଲେ ମାନିବ ନାହିଁ । ତା'ଛଡ଼ା, ଆଉ କାହାରି ଆଗରେ ନିଃସଙ୍କୋଚ ହେବା ବି ସହଜ ନୁହେଁ ।

"ହଜୁର ! ସେ କାହିଁ କେଉଁ କାଳର କଥା । ଆପଣ ମୋତେ ପରେ ସୁନା ମେଡ଼େଲ ଦେବେ ବୋଲି କହିଥିଲେ ।" ସେଦିନ କୃଷ୍ଣଚନ୍ଦ୍ର ସଙ୍କୋଚ ଛାଡ଼ି ଗ୍ରେଧୁଲିଙ୍କୁ ମନେପକାଇ ଦେଲେ ।

"ଦେବି, ଦେବି ! ତୋତେ ଦେବି ନାହିଁ ତ କାହାକୁ ଦେବି !" ଔଦାର୍ଯ୍ୟ ଉଚ୍ଛୁଳାଇ କହିଥିଲେ ଗ୍ରେଧୁଲି । "ମୋ କ୍ଷତିପୂରଣ ବାବଦରେ ଏବେ ବି ଯେଉଁ ଦଶହଜାର ଟଙ୍କା ସରକାରଠିଁ ବାକି ଅଛି, ସେତକ ମିଳିଯାଉ ।" ତା'ପରେ ସେ ସମଗ୍ର ସରକାରକୁ ଏକ ଦୁଷ୍ଟ ବ୍ୟକ୍ତିବିଶେଷ ରୂପେ ଉପସ୍ଥାପିତ କରି ସ୍ୱରୁକ୍ ମାରି ମାରି ତା' ପାଇଜାମା ଫଟାଇ ଦେବାର ଔଚିତ୍ୟ ସମ୍ପର୍କରେ କେତେକ ଟିପ୍ପଣୀ ଦେଇ ସାରି ଗୋଟାଏ କୋଣକୁ ଢଳି ପଡ଼ିବାର ଉପକ୍ରମ କରିଥିଲେ ।

କାଳବିଳମ୍ବ ନ କରି କୃଷ୍ଣଚନ୍ଦ୍ର ତାଙ୍କ ହାତ ଧରି କହିଥିଲେ, "ହଜୁର ! ଆପଣଙ୍କ ପୁଣ୍ୟପ୍ରାଣ ପିତାଙ୍କ ଦୟାରୁ ହିଁ ଏ ଗୋଟିକ ଗଢ଼ାଇ ପାରିଛି । ନହେଲେ ମୁଁ କିଏ, ଇଏ କିଏ ! ଏହା ଆପଣଙ୍କର ବୋଲି ଧରନ୍ତୁ । ଗ୍ରାମବାସୀମାନେ ଆମକୁ ନିମନ୍ତ୍ରଣ କରିଛନ୍ତି । ହଜୁରଙ୍କ ଦୁଆରେ ହିଁ ଅଭିନୟ ହେବ । ସେହି ଘଡିରେ ଆପଣଙ୍କ ସ୍ୱହସ୍ତରୁ ଏହା ଗ୍ରହଣ କରିବି । ଧନ୍ୟ ହେବି, ପବିତ୍ର ହେବି ।"

ଚୌଧୁରୀ ମେଡ଼େଲଟି ବନ୍ଧୁ ସମସ୍ତ ଯାଏଁ ଏପଟ ସେପଟ କଲେ । ସେ ହସୁଥିଲେ ପୁଲକିତ ।

ଚୌଧୁରୀଙ୍କର ସେ ପୁଲକ ସେଦିନ କୃଷ୍ଣଚନ୍ଦ୍ରଙ୍କୁ ଶିଶୁ-ସୁଲଭ ସରଳତା ବୋଲି ହିଁ ମନେ ହୋଇଥିଲା । ଜୀବନର ମହାର୍ଘତମ ସ୍ୱପ୍ନ ଚରିତାର୍ଥ ହେବାକୁ ଯାଉଥିବାରୁ ଦେଖି ସେ ଉଲୁସି ଉଠିଥିଲେ ।

•

ପ୍ରକୃତରେ ତାହାର ଛଅମାସ ମାତ୍ର ତଳେ ନିଜ ପିଣ୍ଡାରେ ମୋହ-ମୁକ୍ତିଜନିତ ଘଟଣାଟି ଘଟି ନ ଥିଲେ ହୁଏତ ସେ ଏଭଳି ପଦକ୍ଷେପ ନେଇ ନଥାନ୍ତେ । ପ୍ରାୟ କୋଡ଼ିଏ ବର୍ଷ ତଳେ ଯାତ୍ରାଦଳ ଭାଙ୍ଗି ଯାଇଥିଲା । ଘଟଣାବଳୀର ଧକ୍କାରେ ଶିଷ୍ୟ-ସହକର୍ମୀମାନେ କିଏ କୁଆଡ଼େ ଛିଟିକି ପଡ଼ିଥିଲେ । କୃଷ୍ଣଚନ୍ଦ୍ରଙ୍କୁ ବି ସହରର ଗୋଟିଏ ଲବ୍‌ଧପ୍ରତିଷ୍ଠ ଥିଏଟର ପାର୍ଟିରେ କେତେବର୍ଷ ପାଇଁ ଜଣେ ସହକାରୀ ରୂପେ କାଳ କାଟିବାକୁ ପଡ଼ିଥିଲା । କେତେବେଳେ ହାର୍ମୋନିଅମ୍ ବଜାଇବାକୁ ପଡ଼ୁଥିଲା ତ କେତେବେଳେ ତୁବ୍ଲି ତବଲା । ନୃତ୍ୟଠୁ ଆରମ୍ଭ କରି ମେକ୍‌ଅପ ପର୍ଯ୍ୟନ୍ତ ସବୁଥିରେ ସେ ସହାୟତା କରୁଥିଲେ । କିନ୍ତୁ ନିଜର ଏକ ନିର୍ଦ୍ଦିଷ୍ଟ ପରିଚୟ ସେ ପ୍ରସ୍ତୁତ କରି ପାରି ନ ଥିଲେ ବା ତାଙ୍କୁ କରିବାକୁ ଦିଆ ହୋଇ ନ ଥିଲା । ଯେଉଁ ଧରଣର ନାଟକମାନ ମଞ୍ଚସ୍ଥ ହେଉଥିଲା, ସେଥିରେ ତାଙ୍କ ଉପଯୋଗୀ ଭୂମିକା ପ୍ରାୟ ନ ଥିଲା । ଆଉ, ତାଙ୍କୁ ନିର୍ଦ୍ଦେଶକ ପଦ ଦେବାର ପ୍ରଶ୍ନ ଉଠୁ ନ ଥିଲା ।

ତାଙ୍କ ଭିତରର ସୃଜନଶୀଳ କଳାକାର ବିଦ୍ରୋହ କରିଥିଲା । ସେ ଗାଁକୁ ଫେରି ଆସିଥିଲେ । ହୃଦୟରେ ଉଜ୍ଜୀବିତ ହୋଇଥିଲା ନିଜ ଯାତ୍ରାଦଳ ପୁନର୍ଗଠନ କରିବାର ଦୃଢ଼ ସଂକଳ୍ପ । ଦୌଡ଼ାଦୌଡ଼ି କରି ସେ ପୁରୁଣା ଲୋକଙ୍କ ଭିତରୁ ଅନେକଙ୍କୁ ଏକଜୁଟ କରିଥିଲେ । ଭିଡ଼ି ଆସିଥିଲେ ଆବାଲ୍ୟ ତାଙ୍କ ନାମ ଶୁଣିଥିବା ଆଖପାଖର ତରୁଣ ଅଭିନେତାମାନେ ।

ସେ ଗୁରୁଙ୍କ 'ଜନକ-ନନ୍ଦିନୀ' ଦେଇ ଆରମ୍ଭ କରିବାର ଅଭିଳାଷ ଘୋଷଣା କରନ୍ତେ ତାହା ସାଦରେ ସମର୍ଥିତ ହୋଇଥିଲା । ତା'ପରେ ଭୂମିକା ବଣ୍ଟନର ପ୍ରଶ୍ନ । ସେ ପାତ୍ର-ପାତ୍ରୀ ତାଲିକାର ପ୍ରଥମ ନାମ 'ରାମ' ପଢ଼ିସାରି ମୁଣ୍ଡ ଅଳ୍ପ ଟେକି ସମବେତ ଶିଳ୍ପୀମଣ୍ଡଳୀ ପ୍ରତି ଦୃଷ୍ଟିପାତ କରିଥିଲେ । ଆଶା କରିଥିଲେ ଏକ ଅଭ୍ୟସ୍ତ ପ୍ରତିକ୍ରିୟା : "ରାମ ଆଉ କିଏ ହେବ ତମ ଛଡ଼ା !"

କିନ୍ତୁ ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ହୋଇଥିଲା ଜଣେ କୋଡ଼ିଏ ବର୍ଷର ତରୁଣ ଉପରେ। ସେ ଗୋଟିଏ ଯୋଡ଼ିଏ ସାମୟିକ ଯାତ୍ରାରେ ନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇ ସୁନାମ ଅରଜିଥାଏ।

କୃଷ୍ଣଚନ୍ଦ୍ର ଚମକି ପଡ଼ିଲେ । ରାମ ଭୂମିକା ପାଇଁ ତାଙ୍କ ନାମ କେହି ପ୍ରସ୍ତାବ କଲେ ନାହିଁ, ଚମକର ହେତୁ ତା'ହା ନଥିଲା। ସେ ବହୁ କାଳରୁ ବୟସର ସେ ପର୍ଯ୍ୟାୟରୁ ଉତ୍ତୀର୍ଣ୍ଣ ହେଲେଣି ବୋଲି ନିଜେ କପଣ ବୁଝି ପାରି ନ'ଥିଲେ— ତାହା ହିଁ ଥିଲା ତା'ର ହେତୁ। ସେ ନିଜକୁ ଧିକ୍‌କାର ଦେଉଥିଲେ।

ଏହି ଘଟଣା ପରେ ହିଁ ସ୍ମୃତିରେ ସଜୀବ ହୋଇ ଉଠିଥିଲା ସୁନା ମେଡ଼େଲ୍‌ର ସ୍ୱପ୍ନ—ଗୋଟାଏ ପ୍ରବଳ ବତାଶରେ ଧ୍ୱସ୍ତ ଧ୍ୱସ୍ତ ପାଉଁଶ ଉଡ଼ି ଯାଉନ୍ତେ ଅନେକ ତଳେ ଧକ୍ ଧକ୍ କରୁଥିବା ଖଣ୍ଡିଏ ଜଳନ୍ତା ଅଙ୍ଗାର ଭଳି।

ଆଜି ସେ ନାୟକ ଭୂମିକା ପାଇଁ ଯୋଗ୍ୟ ନୁହନ୍ତି। ଦିନ ଆସିବ, କୌଣସି ଭୂମିକା ପାଇଁ ବି ସେ ଯୋଗ୍ୟ ବିବେଚିତ ହେବେ ନାହିଁ । ଶେଷ ଅବସ୍ଥାରେ ଗୁରୁ ଯେପରି ବେନ୍ତ ଖଟିଆ ଉପରେ ପଡ଼ି ରହି ଅଙ୍ଗଭଙ୍ଗୀ ଦ୍ୱାରା ନବାଗତ ଶିଷ୍ୟମାନଙ୍କୁ ଅଭିନୟ ଶିଖାଉଥିଲେ ଏବଂ କ୍ରମେ ଅଙ୍ଗମାନେ ବି ଯଥାର୍ଥ ଭଙ୍ଗୀ ଦେବାରେ ଅସମର୍ଥ ହେଉଥିଲେ, ତାଙ୍କର ମଧ୍ୟ ସେହି ଅବସ୍ଥା ହେବ ?

ତେବେ ଗୁରୁଙ୍କୁ ସେହି ଅବସ୍ଥାରେ ସମ୍ମାନ ଦେଖାଇବା ଭଳି ଦରଦୀ ଶିଷ୍ୟଙ୍କର ଅଭାବ ନ ଥିଲା। ତାଙ୍କ ବେଳକୁ ସେଭଳି କେତେଜଣ ଜୁଟିବେ ତା'ର ନିଶ୍ଚୟତା ନଥିଲା।

ଏସବୁ ଚିନ୍ତା ଭିତରେ ସୁନା ମେଡ଼େଲର ଆକର୍ଷଣ ତାଙ୍କୁ କ୍ରମେ ଆୟତ୍ତ କରି ଆଣିଥିଲା। ସେ ଦଶରଥ ଭୂମିକା ଗ୍ରହଣ କରିଥିଲେ । ସେଥିରେ ଅଭିନୟ ଚାତୁର୍ଯ୍ୟ ପ୍ରଦର୍ଶନ ପାଇଁ ଯେତିକି ସୁଯୋଗ ଥିଲା, ସେ ତା'ର ଠିକ୍‌ଣିଖି ସଦୁପଯୋଗ କରିଥିଲେ।

"ଓସ୍ତାଦ ଆଜ୍ଞା, ନମସ୍କାର !"

ସ୍କୁଲ ଘର ଭିତରେ ବିଶ୍ରାମ ନେଉଥିଲେ କୃଷ୍ଣଚନ୍ଦ୍ର । ଟିକିଏ ପରେ ଗ୍ରୀନ୍ ଧୂସରକୁ ଓଲଗି ହେବାକୁ ଯିବେ । ମେଡ଼େଲ କଥା ସ୍ମରଣ କରାଇ ଦେବେ। ଅହିମ-କବଳିତ ଗ୍ରୀନ୍‌ଧୂସର ତାହା ହଜାଇ ଦେଇ ନ ଥିଲେ ରକ୍ଷା । ସେଭଳି ଆଶଙ୍କାକୁ ସେ ମନରେ ପ୍ରଶ୍ରୟ ଦେଉ ନ ଥିଲେ।

"ଆସନ୍ତୁ ନଟ ବାବୁ, ଆସନ୍ତୁ" କହି ସେ ଉଠି ବସିଲେ।

ଦୋକାନୀ ନଟବର କୃଷ୍ଣଚନ୍ଦ୍ରଙ୍କ ସତରଞ୍ଜି ଉପରେ ବସିଲେ । ସ୍ୱାସ୍ଥ୍ୟ, ମେଘ ଦରଦାମ ଉପରେ ଦୁହେଁ ସର୍ବାଦୌ ଏକମତ ହେଲା ଭଳି ଶବ୍ଦର ଆଦାନ ପ୍ରଦାନ ପରେ କଣ୍ଠସ୍ୱର ନିମ୍ନ କରି ନଟବର କହିଲେ, "ଚୌଧୁରୀ ତମ ପାଇଁ ଗୋଟାଏ ସୁନା ମେଡେଲ ଗଢ଼ାଇ ଥିଲେ । ମୁଁ ଏଇ ଆଖିରେ ଦେଖିଛି । କିନ୍ତୁ "

କୃଷ୍ଣଚନ୍ଦ୍ରଙ୍କ ଗ୍ରୀବ ଧଡପଡ଼ ହେଲା । ସେ ଉତ୍କଣ୍ଠ ହେଲେ ।

"ଅଭାବେ ସ୍ୱଭାବ ନଷ୍ଟ । ମୋତେ ସେ ଗୋଟିକ ବଜାରରେ ଯାଇ ବନ୍ଧକୀ କରି ଦେଇ ଆସିବାକୁ କହିଲେ । ମୁଁ କହିଲି, ବାବୁ, ଏତେ ସଉଗରେ ଯଦି ଗଢ଼ାଇଲେ, ବନ୍ଧ ଦେବେ କାହିଁକି ? ଯାହାଙ୍କ ପାଇଁ କଲେ, ତାଙ୍କୁ ଦେଇ ଦିଅନ୍ତୁ ।" କୃଷ୍ଣଚନ୍ଦ୍ର ତାଙ୍କ କଥାରେ ଖୁସି ହେଲେ କି ନାହିଁ ଚିହ୍ନିବାର ଭାବ ଥିଲା ନଟବରଙ୍କ ସ୍ୱରାଣୀରେ ।

"ସେଉଠୁ ?"

"ଆଉ କ'ଣ ଓସ୍ତାଦ ଆଜ୍ଞା ! ଅଫିମ ନହେଲେ ତାଙ୍କୁ ଚଉର୍ଦ୍ଦିଗ ଅନ୍ଧକାର । ଯେମିତି ଖିଆଲରେ ମେଡ଼େଲ ତିଆରି କରାଇଥିଲେ, ସେମିତି ଖିଆଲରେ ବନ୍ଧ ଦେଇଥିବେ । ଅବଶ୍ୟ ମୁଁ ଆଉ ତାଙ୍କୁ ଭେଟି ନାହିଁ । ତେବେ ତାଙ୍କର ଆପଣଙ୍କ ପ୍ରତି ଶ୍ରଦ୍ଧା ଅଛି, କହିବାକୁ ହେବ ... ।"

ନଟବର ବଶିଷ୍ଟ ଲୋକଙ୍କ ସହ ଗପସପ ହେବାକୁ ଭଲ ପାଆନ୍ତି । ତେଣୁ ସେ ଅନର୍ଗଳ କଥା କହି ଯାଉଥିଲେ । କୃଷ୍ଣଚନ୍ଦ୍ର କିନ୍ତୁ ଶୁଣିବା ବନ୍ଦ କରି ଦେଇଥିଲେ ।

ଘଣ୍ଟାକ ଭିତରେ ସେ ଦୁଇ ଦୁଇଥର ଅତି ଗରମ ଚା ପିଇଲେ ଗ୍ରୀବ ଭିତରର ଶୀତକୁ ଦୂର କରିବା ପାଇଁ । ତା'ପରେ ସେ ଚୌଧୁରୀଙ୍କ ଭଙ୍ଗା କୋଠାଆଡ଼େ ଚାଲିଲେ ।

ପରିତ୍ୟକ୍ତ କଚେରୀ ଆଗରେ ଗ୍ରାମବାସୀମାନେ ଚନ୍ଦ୍ରାତପ ଟାଙ୍ଗି ସାରିଥିଲେ ଓ ତଳେ ଅତିକାୟ ସତରଞ୍ଜି ପାରିବାରେ ବ୍ୟସ୍ତ ଥିଲେ । ସେମାନଙ୍କ ଦୃଷ୍ଟି ଏଡ଼ାଇ କୃଷ୍ଣଚନ୍ଦ୍ର ଗୋଟିଏ ଗଳି ପଥରେ ଅଗ୍ରସର ହେଲେ ।

ବାରନ୍ଦା ଆଗରେ ପଥରୋଧ କରି ଯୋଡ଼ାଏ ଗାଈ ବନ୍ଧା ହୋଇଥିଲେ । ସବୁକିଛି ପାଇଁ ଅନାଗ୍ରହୀ କୁକୁରଟି ଚୌଧୁରୀଙ୍କ ଚୌକି ଉପରେ ବିଶ୍ରାମ କରୁଥିଲା ।

,,

ଚୌଧୁରୀଙ୍କ ଶେଷ ଅବଶିଷ୍ଟ ପରସ୍ପରକ ଯୁବାଟି ସାନ୍ଧ୍ୟ ସ୍ନାନ ପରେ ପ୍ରମ୍ନ ଦେହକୁ ଖସି ଯାଇଥିବା ଖଣ୍ଡିଏ ଇଟା ସ୍ଥାନରେ ବିପଜ୍ଜନକ ଭାବରେ ଲାଗି ଯାଇଥିବା ଭଙ୍ଗା ଦର୍ପଣଟିଏ ଗୁଞ୍ଜି ମୁଣ୍ଡ କୁଣ୍ଡାଉ ଥିଲା—'ଜନକ-ନନ୍ଦନୀ'ର ଦର୍ଶକ ରୂପେ ପ୍ରସ୍ତୁତ ଭାବରେ ।

କିନ୍ତୁ ଚୌଧୁରୀ ନ ଥିଲେ ।

"ବାବୁ ବଜାରକୁ ଯାଇଛନ୍ତି ।" ପରସ୍ପରକ କୃଷ୍ଣଚନ୍ଦ୍ରଙ୍କୁ ନମସ୍କାର କରି ଜଣାଇଲା, "ଡେରିରେ ଆସିବେ ।"

କୃଷ୍ଣଚନ୍ଦ୍ର ଭୁଲି ପଡ଼ିଲେ । ସନ୍ଧ୍ୟା ହୋଇ ଆସୁଥିଲା ।

ଆଉ ଚୌଧୁରୀ ଆସିବେ ! ସୁନା ମେଡ଼େଲ୍ ବିକି ସେ ପ୍ରଚୁର ଅଫିମ କିଣିଥିବେ । ଚେଲାଏ ପକାଇ ତା'ପରେ ବସି ଯାଇଥିବେ କେଉଁଠାରେ ଗଛ ମୂଳରେ, ନ ହେଲେ ନଈ କୂଳରେ । ଗତିଶୀଳ ସମସ୍ତ ସହ ସବୁ ସମ୍ପର୍କ ତୁଟି ଯାଇଥିବ । ବାସ୍ତବିକ, ତାଙ୍କଠୁଁ ସ୍ୱାଭାବିକ ବ୍ୟବହାର ଆଶା କରି ସେ କେଡ଼େ ଭୁଲ କରିଛନ୍ତି !

ସାମାନ୍ୟ ଆହାର ପରେ କୃଷ୍ଣଚନ୍ଦ୍ର ସାଜ ହେବାରେ ମନ ଦେଲେ । ଗୁରୁ କହୁଥିଲେ, "ନପଣ ଅପମାନ, ପଣେ ମାନ; ରାଜ ଥିଲେ ନାଚ ଗାନ !" ଅଭିନେତା ଜୀବନରେ ଏହାହିଁ ନିୟମ । ସେ ଏଭଳି ଅନେକ ପ୍ରାସଙ୍ଗିକ କଥା ମନେ ପକାଇ ହୃଦୟରେ ବଳ ସଞ୍ଜୀବିତ କରିବାର ଚେଷ୍ଟା କରୁଥିଲେ ।

ଥରେ ଯାତ୍ରା ଆରମ୍ଭ ହେବା ପରେ ଯନ୍ତ୍ରଣା ଭୁଲିଯିବା ଅପେକ୍ଷାକୃତ ସହଜ ହେଲା । ସେ ପ୍ରାଣ ଢାଳି ଅଭିନୟ କଲେ; ଗମ୍ଭୀର ଧ୍ୟାନ ଦେଇ ଅନ୍ୟମାନଙ୍କ ଅଭିନୟର ଗୁଣଗୁଡ଼ିକ ଲକ୍ଷ୍ୟ କଲେ । ହର୍ଷଧ୍ୱନି, ଅଶ୍ରୁପାତ ଭିତରେ ନାଟକ ଅଗ୍ରସର ହେଲା ।

ପ୍ରଥମ ଅଙ୍କର ଶେଷ ଦୃଶ୍ୟରେ ହିଁ ଦଶରଥଙ୍କ ମୃତ୍ୟୁ । କୃଷ୍ଣଚନ୍ଦ୍ର ପୋଷାକ ଓ କେଶ ସଜ୍ଜା ବାହାର କରିଦେଇ ଆସି ହାର୍ମୋନିଅମ ଓ କ୍ଲାରିଓନେଟ ବାଦକଦ୍ୱୟଙ୍କ ମଝିରେ ବସି ରହିଥିଲେ ।

ମୁହୂର୍ତ୍ତିକ ସକାଶେ ସେ ଅନ୍ୟମନସ୍କ ହୋଇ ପଡ଼ିଥିଲେ ପଞ୍ଚମ ଅଙ୍କ ଆରମ୍ଭର ପୂର୍ବବର୍ତ୍ତୀ ବିପୁଳ ଯନ୍ତ୍ରସଙ୍ଗୀତ ଝଙ୍କାର ଦେଲେ । ଶୁଭିଲା ଏକ ମୃଦୁ କଣ୍ଠ

ବ୍ୟାପକ ଗୁଞ୍ଜରଣ । ସଙ୍ଗୀତର ଝଙ୍କାର ବନ୍ଦ ହୋଇଗଲା । ସେ ମୁଣ୍ଡ ଟେକି ଅନାଇଲେ । ରଙ୍ଗଭୂମି ମଝିରେ ଦଣ୍ଡାୟମାନ ନନ୍ଦନ ଚୌଧୁରୀ । ସେ ପିନ୍ଧିଥିଲେ ରେଶମବସ୍ତ୍ର ସହ ଖଣ୍ଡିଏ ଜରିଦାର୍ କୋଟ୍ ।

"ଓସ୍ତାଦ କୃଷ୍ଣଚନ୍ଦ୍ର !" ଚୌଧୁରୀ ଡ଼ାକ ଦେଲେ । ଯନ୍ତ୍ରଚାଳିତ ବତ୍ କୃଷ୍ଣଚନ୍ଦ୍ର ଠିଆ ହେଲେ ଓ ରଙ୍ଗଭୂମି ଭିତରକୁ ପାଦ ପକାଇଲେ ।

"ଭଦ୍ରମଣ୍ଡଳି ! ମହାନ୍ କଳାକାର ଓ ନାଟ୍ୟଗୁରୁ ଓସ୍ତାଦ-କୂଳ-ଶିରୋମଣି କୃଷ୍ଣଚନ୍ଦ୍ରଙ୍କ ଅଭିନୟରେ ମୁଗ୍‌ଧ ହୋଇ ଆମ୍ଭେ ଆଜ ତାଙ୍କୁ ଏହି ସୁବର୍ଣ୍ଣ-ପଦକରେ ଭୂଷିତ କଲୁଁ ।"

ଗୋଟିଏ ଶବ୍ଦ ଅତି ଯୋରରେ ତ ଗୋଟିଏ ଶବ୍ଦ ଅତି ଧୀରେ ଉଚ୍ଚାରଣ କରି ଚୌଧୁରୀ ଏତକ କହି ସୁନା ମେଡ଼େଲ ଉଚ୍ଚକରି ଧରିଲେ । ହୋଲ୍ଡମାନ ଡେ'ଲାଇଟର ଝଲକରେ ତାହା ଥରେ ଦୁଇଥର ଚକମକ କରି ଉଠିଲା । କରତାଳି ଧ୍ୱନିରେ କମ୍ପମାନ ହେଲା ଚତୁର୍ଦ୍ଦିଗ ।

"ହଜୁର୍ !" କହି କୃଷ୍ଣଚନ୍ଦ୍ର କାନ୍ଦି ପକାଇଲେ । ନନ୍ଦନ ଚୌଧୁରୀ ତାଙ୍କୁ କୁଣ୍ଢାଇ ଧରିଥିଲେ ।

କରତାଳି ଧ୍ୱନି ଅବ୍ୟାହତ ରହିଥାଏ । ଚୌଧୁରୀ କୃଷ୍ଣଚନ୍ଦ୍ରଙ୍କୁ କହିଲେ ଚୁପି ଚୁପି, "କୋଟ ଖଣ୍ଡିକ ମରାମତି କରାଇବା ପାଇଁ ଯାଇଥିଲି, କୃଷ୍ଣ ! ଛିଣ୍ଡା ପୋଷାକ ରେ ତ ଆଉ ସୁନା ମେଡ଼େଲ ଦେଇ ହୁଏନା ! କିନ୍ତୁ; ଆସି ପାରିଲି !"

"ହଜୁର ! ଆପଣ ବହୁତ ପାରିଲେ । ଏମିତି ମୁଁ କେବେ ପାରିନାହିଁ ।" ବଡ଼ ଆନ୍ତରିକ କଣ୍ଠରେ କହିଲେ କୃଷ୍ଣଚନ୍ଦ୍ର ।

ନନ୍ଦନ ଚୌଧୁରୀଙ୍କ ଥରି ଥରି ହାତରୁ ମେଡ଼େଲଟି ନେଇ କୃଷ୍ଣଚନ୍ଦ୍ର ଦର୍ଶକମଣ୍ଡଳୀକୁ ନୀରବ ହେବାକୁ ଇଙ୍ଗିତ ଦେଲେ ଓ କହିଲେ, "ସଜ୍ଜନ ମଣ୍ଡଳି !"

ସେ କିନ୍ତୁ ଆଉ କିଛି କହି ପାରିଲେ ନାହିଁ । ମେଡ଼େଲଟି ସେ ନନ୍ଦନ ଚୌଧୁରୀଙ୍କ କୋଟ୍‌ରେହିଁ ଯେମିତି ଲଗାଇ ଦେବାକୁ ପ୍ରେରଣା ଅନୁଭବ କରୁଥିଲେ ! କିନ୍ତୁ ଚୌଧୁରୀ ତାଙ୍କୁ କୁଣ୍ଢାଇ ଧରି ଦର୍ଶକ ମଣ୍ଡଳୀ ଭିତର ଦେଇ କଚେରି ପିଣ୍ଡା ଆଡ଼କୁ ଅଗ୍ରସର ହେବାକୁ ଆରମ୍ଭ କଲେ ।

ଅନ୍ତେଉଲ୍ଲା ଭବନରେ ଜନତା ପୁଣି ଥରେ କରତାଳି ଧ୍ୱନି ଦେଲା—କୃଷ୍ଣଚନ୍ଦ୍ର ଓ ବୈଧୁସ୍ୱାଙ୍କର ସେ ବିହ୍ୱଳ ମିଳନ ଅବା ନାଟକର ଶ୍ରେଷ୍ଠ ଅଂଶବିଶେଷ ଥିଲା ଏବଂ ଦୁଇ ଅଭିନେତା ଅବା ଅପୂର୍ବ ସାଫଲ୍ୟ ଅର୍ଜନ କରିଥିଲେ !

ଦୁହେଁ ଆସନ ଗ୍ରହଣ କରିବା ମାତ୍ରେ ହେଲା ଘଣ୍ଟା ଧ୍ୱନି । ଆରମ୍ଭ ହେଲା ପଞ୍ଚମ ଅଙ୍କ ।






ରଘୁନାଥ ମହାପାତ୍ର

ସେତେବେଳକୁ ପାଞ୍ଚଟା ବାଜିଗଲଣି, ଜେଲ୍‌ର ଉଚ୍ଚାକାନ୍ଥ ତଳକୁ ସୂର୍ଯ୍ୟଦେବତା ଖସିଲେଣି । ପଶ୍ଚିମପାଖ ଆକାଶଟା ସତେ ଯେପରି ରକ୍ତରେ ଜୁଡ଼ୁବୁଡ଼ୁ ଆଉ ଅଧଘଣ୍ଟାକ ପରେ ଖାଇବା ପାଇଁ ସମସ୍ତେ ବସିବେ । ଅନାଉ ଅନାଉ ଜେଲ୍ ଘଣ୍ଟାରେ ଠଙ୍ ଠଙ୍ ହୋଇ ଛ'ଟା ବାଜିବ ।

ତା'ପରେ କଇଦୀ ସବୁ ପଶିଯିବେ ସେଇ ଲମ୍ବା ହାଜତ ଭିତରକୁ ।

ଖାଇ ସାରିବା ପରେ ବିଡ଼ିଟାଏ ଟାଣିଦେବା ପାଇଁ ରାଜୀବର ମନଟା ଉଚ୍ଚାଟ ହୁଏ । କିନ୍ତୁ ଜେଲ୍ ଭିତରେ ବିଡ଼ିଟାଏ ତାକୁ ଦେବ କିଏ ? ଏ ଶଳା ଯେଉଁ ଅସୁର ପଲ ଓ୍ୱାର୍ଡ଼ର ରହିଛନ୍ତି, ଏ ତ ଶ୍ୱେରଙ୍କ ଜିନଷ ଖାଇ, ଶ୍ୱେରଙ୍କୁ ଖାଇଦେବାକୁ ବସିଛନ୍ତି । ଏଗୁଡ଼ାଙ୍କ ଠେଁ କାହାରି. ହେଲେ ଦୟାମାୟା ନାହିଁ । ଶ୍ୱେର ଡାକୁଙ୍କଠାରୁ ଏଗୁଡ଼ା ଆହୁରି ନିଷ୍ଠୁର ।

ସେଇ କଳା ମୋଟା ଭୁସୁଣ୍ଡି ଲୋକଟା । ମୋଟା ମୋଟା ନିଶହଲେ ଗାଲମୁଚ୍ଛା ଦେହରେ ଲଗେଇ ଦେଇଛି । ବହଳିଆ ବହଳିଆ ଭ୍ରୂଲତା । କ'ଣ ତ କୃଷ୍ଣ ଓ୍ୱାର୍ଡ଼ର । ଚେହେରାଟା ଅସୁର ପରି ହେଲେ କ'ଣ ହେବ ଗୁଡ ଭିତରେ ପରପାଇଁ ଟିକିଏ ଦରଦ ଅଛି । ସେଇ ଲୋକଟା ପକେଟରେ ଲୁଚେଇ ଆଣି ପାଞ୍ଚଟା ଦଶଟା ଲେଖାଁ ବିଡ଼ି ଦେଇଯାଏ, ତା' ବଦଳରେ ସେ ହପ୍ତାକୁ ହପ୍ତା ଲୁଗାଧୁଆ ସାବୁନ, ତେଲ, ମସଲା ନେଇଯାଏ । କୃଷ୍ଣ ଓ୍ୱାର୍ଡ଼ରଟାର ଆଜି କାହିଁକି ଦେଖାନାହିଁ । କ'ଣ ଛୁଟି ଫୁଟି ନେଲା କି ? କେତେଆଡ଼ୁ କେତେକଥା ଭାବୁଥାଏ ରାଜୀବ । ସେଇ ସଞ୍ଜବେଳର ଡିଉଟିରେ ଥିବା ଓ୍ୱାର୍ଡ଼ରକୁ ରାଜୀବ ପଚାରିଦେଲା କୃଷ୍ଣବାବୁଙ୍କର ଆଜି ଡିଉଟି ନାହିଁ କି ? କୃଷ୍ଣବାବୁଙ୍କ ନାଆଁ ଶୁଣି ଓ୍ୱାର୍ଡ଼ର ଚିହିଙ୍କି ଉଠିଲା ତୋର କ'ଣ ଦରକାରବେ କୃଷ୍ଣ ଓ୍ୱାର୍ଡ଼ର ସାଙ୍ଗରେ ।

ରାଜୀବ ହସିଦେଇ କହିଲା—କିଛି ନାହିଁ ଯେ ଗୋଟାଏ ବିଡ଼ି ଦରକାର । ଓ୍ୱାର୍ଡ଼ର ବଳେଇ ପରି ଚିତ୍କାର ଉଠିଲା, ଓଃ ଶଳା ଭାରି ଅମଲଟା—ବିଡ଼ି ନହେଲେ ଏହାର ଚଳୁନାହିଁ । ବିଡ଼ି ଖାଇବାର ଏତେ ସଉକ ତ ଶଳା ଡକାୟତି କରି ଜେଲ ଖଟୁଥିଲୁ କାହିଁକି ?

ରାଜୀବର ଇଚ୍ଛା ହେଉଥିଲା ଓ୍ୱାର୍ଡ଼ରଟାର ତଣ୍ଟି ଚିପିଧରି କହନ୍ତା ଆବେ ହାରାମଯାଦା! ଆମେ ସବୁ ଯଦି ଜେଲ୍ ନ ଖଟନ୍ତି ତମେ ଚାକିରି କରନ୍ତ କାହାପାଇଁ । ଏ ଡାଲି, ଚାଉଳ, ତେଲ, ପରିବା ଚୋରି କରନ୍ତ କାହା ପାଇଁରୁ । କିନ୍ତୁ ରାଜୀବର ପାଟି ଖୋଲିଲା ନାହିଁ । ସେ ଅପେକ୍ଷା କଲା କୃଷ୍ଣ ଓ୍ୱାର୍ଡ଼ରର ଆଗମନକୁ । ଛ'ଟା ପରେ ଯଦି ତା'ର ଡ୍ୟୁଟି ପଡ଼େ ତାହେଲେ ନିଶ୍ଚୟ ସେ ବିଡ଼ି ଆଣିବ, ଏ ହପ୍ତାର ସାବୁନ ସେଇମିତି ଥୁଆହୋଇଛି । କୃଷ୍ଣ ଓ୍ୱାର୍ଡ଼ର ଆସିଲେ ତା'ର ପାଞ୍ଚଟା ଦାଲି ସୂତାବନ୍ଧା ଗ୍ରେଟ ବିଡ଼ି ଦେବ ଆଉ ସାବୁନ ତେଲ ସବୁତକ ଉଠେଇନବ ।

ରାଜୀବର ଯାବଜ୍ଜୀବନ କାରାଦଣ୍ଡ ଆଦେଶ । ଏଇ ମୋଟେ ବର୍ଷଟେ ପୂରିଛି । ଆହୁରି ଦୀର୍ଘ କେତେଦିନ...? ମୃତ୍ୟୁବାଳ ହୁଏତ ତା'ର ସବୁ ପାପ ଚାପିଯିବ । ଏଇ ଜେଲରେ ସେ ମରି ବି ଯାଇପାରେ । ଜେଲ୍ ପ୍ରାର୍ଥନା ସଭାରେ ଯୋଗ ଦେଲାବେଳେ ସେ ଭାବୁଥିଲା ସେ ନିଜକୁ ସଂଶୋଧନ କରିନେବ, ବିଡ଼ିଖିଆ ଛାଡ଼ିଦେବ; କିନ୍ତୁ କାହିଁ ନିଜକୁ ସେ ସଂଶୋଧନ କରି ପାରୁନାହିଁ, ବିଡ଼ିଖିଆଟା ଆଦୌ ଛାଡ଼ିପାରୁ ନାହିଁ । ସେହି ଧୂଆଁ କେତେ ଢୋକରେ କ'ଣ ଯେ ତୃପ୍ତି ରହିଛି ସେ କଥା ସେ ଜାଣି ପାରେନା କିନ୍ତୁ ପରମ ସନ୍ତୋଷ ଲଭକରେ ସିଏ ।

ସାଧୁରୁ ଚୋର ତାକୁ କଲା ଏଇ ବିଡ଼ି, ଏଇ ବିଡ଼ି ତାର ଜୀବନର ଗତି ପଥକୁ ବଦଳେଇ ଦେଇଛି, ଏଇ ବିଡ଼ି ପାଇଁ ସେ ଆଜି ଜେଲ ଭିତରେ ।

ପିଲାଦିନର ନୃତ୍ୟ ରାଜୀବ ଆଖି ଆଗରେ ନାଚଯାଏ । ସେ କେବେ କାହାଠାରୁ ବିଡ଼ିଖିଆ ଶିଖିଲା ଏବେ ତାର ମନେ ନାହିଁ; କିନ୍ତୁ ବାପ ପକେଟରୁ ଥରେ ପାଞ୍ଚଟା ବିଡ଼ି ନେଇ ଆସିଥିଲା । ସେତେବେଳେ ବୟସ ଦଶ କି ବାର ହେବ । ନଡ଼ିଆକତାରେ ନିଆଁ ଲଗେଇ ନେଇ ଗାଁ ମୁଣ୍ଡ ଆମ୍ବତୋଟାକୁ ଚାଲିଗଲା । ତୋଟା ଭିତରେ କେହି କୁଆଡ଼େ ନାହାନ୍ତି । ଖାଲି ଝାଙ୍କା ଆମ୍ବଗଛ ଗୁଡ଼ା ଛିଡ଼ା ହୋଇଛି । ବେଶ୍ ନିରୋଳା ଜାଗା । ରାଜୀବ ନଡ଼ିଆକତା ନିଆଁରୁ ବିଡ଼ି ଲଗେଇ ସୁ ସୁ ଟାଣିଲା । କଡ଼ା କଡ଼ା ଧଳାଧୂଆଁ ପାଟିରୁ ଭକଭକ ଛାଡ଼ି ଦେଉଥାଏ । ଥରେ ଅଧେ ଧୂଆଁକୁ ବି ଢୋକ ଦେଇ ଖେଁ ଖେଁ କାଶିଛି । ସେତେବେଳେ ବି ଛାତିରେ ଛୁନଆ ପଶିଯାଇଛି କାଳେ କିଏ ଦେଖି ନେବ କି ।

ଆମ୍ବକୋଠାର ନୀରବତା ଭଙ୍ଗକରି କିଏ ପାଟିକରି ଡାକିଦେଲା—ରାଜୁଭାଇ, ଦେଖିଲଣି ଦେଖିଲଣି କହିଦେବି ତୋ ବା’ ପାଖରେ । ଲୁଚେଇ ଲୁଚେଇ ବିଡ଼ିଖିଆ ହେଉଛୁ ନୁହେଁ । ରାଜୀବ ଚମକିପଡ଼ି ଚାହିଁଦେଲା ପଛକୁ । ରାଧା ଛିଡ଼ାହୋଇ ହିଁ ହିଁ ହୋଇ ହସୁଛି ।

ରାଜୀବ ମନରେ ଭୟ ପାଇଗଲା । ସେ ରାଧା ପାଖକୁ ଆସି ଅନୁନୟ ସ୍ୱରରେ କହିଲା - ରାଧା, ବା’ପାଖରେ କହିବୁ ନାହିଁ । ତତେ ଦଶପଇସା ଦେବି ।

ରାଧା କଣ୍ଠସ୍ୱର ଆହୁରି ଚଢ଼ାଇକରି କହିଲା—କହିବି ନାହିଁ, ନିଶ୍ଚୟ କହିବି । ତୁ କାହିଁକି ବିଡ଼ି ଖାଉଛୁ ।

—ନାଁ । ଆଉଦିନେ ଖାଇବି ନାହିଁ ।

ରାଜୀବ ହାତରେ ଧରିଥିବା ବିଡ଼ି ଚାରିଟାକୁ ଦଳିଦେଇ ସେଇଠି ଫୋପାଡ଼ି ଚାଲିଗଲା ।

କିନ୍ତୁ କଥା ଏତିକିରେ ଶେଷ ହେଲାନାହିଁ । ରାଜୀବର ଏହି ଦୁର୍ବଳତାର ସୁଯୋଗ ନେଇ, ରାଧା ଯେତେବେଳେ ଯେଉଁଠି ଦେଖେ କହିଦିଏ, ରାଜୁଭାଇ ସେଇକଥା କହିଦେବି ।

ରାଜୀବ ଓଠରେ ବଢ଼ିଆଙ୍ଗୁଳି ଦେଇ ଧୀର୍ କଣ୍ଠରେ କହେ, ଚୁପ୍ । ରାଧା ହସିଦିଏ ।

ରାଜୀବ ଦିନକୁଦିନ ବଡ଼ହେଲା । ମାଇନର ଫେଲ୍ ହୋଇ ଆଉ ପାଠ ପଢ଼ିଲା ନାହିଁ । ଗାଆଁର ବଜାଖି ଟୋକାଙ୍କ ସାଙ୍ଗେ ମିଶି ପଶା ଖେଳିଲା, ତାସ୍ ଖେଳିଲା । ରାତିରେ ନାଟ ତାମସା ଦେଖିବାକୁ ଦୂର ଗାଆଁକୁ ଗଲା । ସେଠାରେ ପାନ, ବିଡ଼ି, ସିଗାରେଟ ସବୁକିଛି ଖାଇଲା । କ୍ରମେ ବିଡ଼ିଟା ତାର ଅଭ୍ୟାସରେ ପରିଣତ ହୋଇଗଲା । ଆଗରୁ ଯିଏ ଲୁଚେଇ ବିଡ଼ି ଖାଉଥିଲା ଏବେ ସମସ୍ତଙ୍କ ଆଗରେ ସେ ବିଡ଼ିଖାଏ । କେବଳ ବାପାକୁ ଟିକିଏ ଡରେ । ଏହି ବିଡ଼ିଖିଆ ପାଇଁ ବାପା ଦି’ ଚାରିଥର ତାକୁ ଖୁବ୍ ବାଡ଼େଇଲା । ନିୟମ କରେଇଲା କହ ଆଉ ବିଡ଼ି ଖାଇବ ନାହିଁ । ରାଜୀବ ସେତେବେଳେ ମାଡ଼ ଭୟରେ କହିଦିଏ ନା ଆଉ ଖାଇବି ନାହିଁ । ଦି’ ଚାରିଦିନ ଗୁଡ଼ିଦିଏ । ପରେ ପୁଣି ଯେଉଁ କଥାକୁ ସେହିକଥା । ସେପରି ବିଡ଼ି କିଣି ନ ପାରେ ସେଥିପାଇଁ ବାପା କଡ଼ାଦୃଷ୍ଟି ରଖିଲା । ଗାଆଁର ଦୋକାନୀଙ୍କୁ କହିଦେଲା କେହି ତାକୁ ବିଡ଼ି ଦେବନାହିଁ । ବାପା ବି ଖର୍ଚ୍ଚ କରିବାକୁ ପଇସାଟିଏ

ହଏନାହିଁ । ଗୁଜାବ ସାଙ୍ଗ ସାଥୀମାନଙ୍କ ନିକଟରୁ ମାଗିକରି ବଡ଼ ଖାଏ । କେଉଁଠି ସୁବିଧା ଦେଖିଲେ କାହା ପକେଟ ଅଣ୍ଡାଳି ବି ନେଇଆସେ ।

ଗାଆଁ ପାଖ ମେଳଣକୁ ଥରେ ଗୁଜାବ ଯାଇଥିଲା । ଗାଆଁର ବହୁତ ଲୋକ ବି ଯାଇଥା'ନ୍ତି । ଦୋ'ଲ ପୁନେଇ ଗୁଡ, ଚାରିଆଡ଼ୁ ଠାକୁର ସବୁ ବିମାନ ଚଢ଼ି ଶ୍ରେଷଣୀରେ ଆସୁଥା'ନ୍ତି । ତାଳ, ଝାଞ୍ଜ, ଘଣ୍ଟା ମାଦଳରେ କାନ ଅତଡ଼ା ପଡ଼ିଯାଉଥାଏ । କିସ କିସମର ବାଣ ବି ଫୁଟୁଥାଏ ।

ଏତିକିବେଳେ ଗୋଟାଏ ପାନ ଦୋକାନ ପା'ଖରେ ଖ୍ରିଷଣ ଗଣ୍ଡଗୋ'ଳ ହେଲା । ଚୋର ଚୋର ବୋଲି ଚାରିଆଡ଼େ କମ୍ପିଗଲା । ଶହ ଶହ ମଣିଷ ଘେରିଗଲେ । ଦେଖିଲାବେଳକୁ ପାନଦୋକାନୀ ଗୁଜାବ ବେକରେ ଗୋଟିଏ ଗାମୁଛା ପକେଇ ମୋଡ଼ି ମୋଡ଼ି ଧରି ଦେଉଥାଏ ମୁଥିଏ ଲେଖା ଗାଳିକୁ । ଲୋକ ପାଟି କରୁଥା'ନ୍ତି କ'ଣ କରୁଛୁ କ'ଣ କରୁଛୁ । ସେ କଥାର ଉତ୍ତର ଦେଉଛି କିଏ ?

ଦେଖଣାହାରିଙ୍କ ଭିତରୁ କେତେଜଣ ଯାଇ ଗୁଜାବ ପିଠିରେ ବସେଇ ଦେଉଥା'ନ୍ତି ବିଧା ଚାପୁଡ଼ା । ସବାଶେଷରେ ଯୁବକସଙ୍ଘ ଦଳ ଆସି ପହଞ୍ଚିଲେ । ସେମାନେ ଗୁଜାବକୁ ମାଡ଼ରୁ ରକ୍ଷାକଲେ । ଖବର ବୁଝି ବୁଝି ଜଣାଗଲା ଗୁଜାବ ହ'ଟା ବଡ଼ ବଣ୍ଡଲ ଚୋରିକରି ନେଇ ପଳାଉଥିଲା । ଯୁବକସଙ୍ଘ ପିଲାଏ ଗୁଜାବର ଘର, ବାପା ନାଆଁ, ଥାନା, ପୋଷ୍ଟଅଫିସ ଟିପିରଖି ସକାଳ ପହରକୁ ଛାଡ଼ିଦେଲେ । କହିଲେ ଦେଖ ପ୍ରଥମ ଥର ପାଇଁ ତୁମକୁ ଛାଡ଼ି ଦିଆଗଲା । ଆଉଥରେ ଯଦି ଏପରି ହାତଉଠା କାମକର ତେବେ ଥାନାରେ ନେଇ ଦେଇଦେବୁ ।

ଗୁଜାବ ବିଚରା ମୁହଁ ଶୁଖେଇ ଘରକୁ ଫେରିଲା । କଥାଟା ଚାରିଆଡ଼େ ପ୍ରଚାର ହୋଇଗଲା– ଜିତୁ ନାୟକ ପୁଅ ଗୁଜାବ ମେଳଣରେ ଚୋରିକରି ଧରାପଡ଼ିଛି ।

ବାପ ତାର ରାଗରେ ଖୁବ୍ ବାଡ଼େଇଲା ଗୁଜାବକୁ । ସେହି ଖଣ୍ଡେ ଲୁଗା କ ମ.ରେ ଗୁଜାବ ପଳେଇଲା କଟକ । କଟକ ସହରରେ ବୁଲିଲା । ମିସ୍ତ୍ରୀ କାମ କଲା । ଯେଉଁ ଟଙ୍କା ରୋଜଗାର କଲା ସେଥିରେ ସେ ହୋଟେଲରେ ଖାଇଲା । ବଡ଼ ସିଗାରେଟ ପିଇଲା, ସିନେମା ଦେଖିଲା । ବେଶ୍ ଫୂର୍ତ୍ତି ମଉଜରେ ତା ଦିନ କଟିଲା ।

ଯେତେବେଳେ ସେ ଏଇ ସିନେମା ଦେଖେ ସେତେବେଳେ ତାର ରାଧାକଥା ମନେପଡ଼େ । ରାଧା ଏବେ କେତେବଡ଼ ହୋଇଯିବଣି । ଫ୍ରକ୍‌ଗୁଡ଼ ଶାଢ଼ୀ ପିନ୍ଧିବଣି, କେତେ ସୁନ୍ଦର ଦିଶୁଥିବ ଏବେ ରାଧା ! ରାଧାର ମନ ଗହନରେ ଏଇ ଗୁଜାବ ପାଇଁ ଯେପରି ଥିଲା ଦୁର୍ବଳତା ଗୁଜାବର ମଧ୍ୟ ରାଧା ପାଇଁ ଥିଲା ଦୁର୍ବଳତା ।

ଗାଆଁରେ ଥିଲାବେଳେ କେତେବେଳେ କେମିତି ପଦେ ଅଧେ ଅଶ୍ଳୀଳିଆ କଥା । ଆଉ ତାଛଡ଼ା ତ କଛି ନୁହେଁ । ଅପରିପକ୍ୱ ବୟସ, କଶୋର ମନ, ଲାଜୁଆ ଲାଜୁଆ ଆଖି । ରାଜୀବର କେତେକଥା କହିବାକୁ ଇଚ୍ଛାହୁଏ । ଭୟଲାଗେ କହି ପାରେନା । ଏବେ କିନ୍ତୁ ରାଜୀବ ସିନେମାରେ ନାୟକ ନାୟିକ ର ପ୍ରେମ, ବିରହ, ମିଳନ ଦେଖିଲେ ବେଶ୍ ଆନନ୍ଦ ଅନୁଭବ କରେ । ଏହିପରି ପ୍ରେମ କରିବାର ସୁଯୋଗ ସେ ଖୋଜେ । ମନେ ମନେ ସେ ରାଧାକୁ ଖୋଜେ । ଅକସ୍ମାତ୍ ଯଦି ଏଇ କଟକରେ କେଉଁଠି ଦେଖା ହୋଇଯା'ନ୍ତା; ତେବେ ସେ ତାକୁ ଭଡ଼ାଘର ନେଇ ରଖନ୍ତା । ଗୋଟେ ଦ'ଟା ସିନେମା ସୋ ଦେଖନ୍ତା । ପ୍ରେମ ବିଷୟରେ କିଛି ଅନୁଭୂତି ତାକୁ ଦେଇ ଗାଆଁକୁ ପଠେଇ ଦିଅନ୍ତା ।

କିନ୍ତୁ କାହିଁ କେବେହେଲେ ରାଧା ସହିତ ତା'ର ସାକ୍ଷାତ ହେଲାନାହିଁ । ରାଧାର ଅନୁପସ୍ଥିତିକୁ ରାଜୀବ ଗମ୍ଭୀରଭାବେ ଅନୁଭବ କଲା । ରାଧା ପାଇଁ ମନଟା କ୍ରମେ କ୍ରମେ ଦୁର୍ବଳ ହୋଇପଡ଼ିଲା ।

ଶେଷରେ ରାଜୀବ ଠିକ୍ କଲା ସେ ଦିନେ ଗାଆଁକୁ ଯିବ । ରାଧାକୁ ଯାଇ ଦେଖିଆସିବ । ତା ପାଇଁ ବାସନା ତେଲ, ବାସନା ସାବୁନ, ପାଉଡ଼ର, ଆଇନା ସବୁ କିଣିଲା ।

ପ୍ରାୟ ଦୁଇବର୍ଷ ପରେ ରାଜୀବ ଫେରିଲା ଗାଆଁକୁ । ଆଗର ହାଫ୍‌ପେଣ୍ଟ ପିନ୍ଧା ରାଜୀବ ଆଉ ସେ ନୁହେଁ । ସଫାଧୋତି ସଫା ପଞ୍ଜାବୀ ପିନ୍ଧା ଜଣେ ଭଦ୍ରଲୋକ ବେଶ୍ ସ୍ୱାସ୍ଥ୍ୟବାନ ପୁରୁଷ । ନାକତଳେ କଳା କଳା ସୁନ୍ଦର ନିଶ । ଓସାରିଆ ଛାତି । ମୋଟା ହାତ ଗୋଡ଼ ।

ମେଳଣରୁ ବଡ଼ ଗ୍ରେଶରକର ଯେଉଁ ରାଜୀବ ପଳେଇ ଯାଇଥିଲା ବାପ ମାଡ଼ ଭୟରେ ସେ ରାଜୀବ ଫେରିଛି ଦୁଇବର୍ଷ ପରେ । ବିଜୁଳି ବେଗରେ ଖବରଟା ଗାଆଁରେ ପ୍ରଚ୍ଚାର ହୋଇଗଲା । ରାଜୁଆ ମରି ନାହିଁରେ—କେଉଁଠି କଟକରେ ଥିଲା ଏବେ ଫେରିଛି ।

ଜଗୁ ନାୟକ ଦୁଆର ମୁହଁରେ ଗାଆଁ ଯାକର ମଣିଷଙ୍କର ଭିଡ଼—ରାଜୀବକୁ ଦେଖିବେ । ରାଜୀବ ଲୁଙ୍ଗିଟା ପାଲଟି ପକାଇ ଦୁଆର ମୁହଁ ବେଞ୍ଚ ଉପରେ ବସିଥାଏ । ତାକୁ ସମସ୍ତେ ଦେଖୁଥା'ନ୍ତି । ସେ ବି ସମସ୍ତଙ୍କୁ ଦେଖୁଥାଏ । ମଣିଷ ଭିଡ଼ ଭିତରେ ଖୋଜୁଥାଏ ସେ ରାଧାକୁ । କେତେ ମଣିଷ ଆସିଲେ ଗଲେ । ରାଧା ଆସିଲା ସବା ଶେଷରେ । ସମସ୍ତଙ୍କର ଭିଡ଼ ସେତେବେଳକୁ କମିଗଲାଣି । ରାଜୀବ

ସୁଧାକୁ ଦେଖି ଚମକି ପଡ଼ିଲା, ଏଡ଼େ ବଡ଼ ମାଇପିଟାଏ କିଏ। ରଙ୍ଗିନ ଶାଢ଼ୀ ପିନ୍ଧିଛୁ । ଏଇ କ'ଣ ସେହି ସୁଧା ! ଗ୍ରୋଟ ଫ୍ରକ୍ ଖଣ୍ଡେ ପିନ୍ଧି ଯିଏ ଗାଆଁ ଦାଣ୍ଡରେ ଦୌଡ଼ୁଥିଲା ତାକୁ ଡଗେଇଥିଲା ସୁଜି ଭାଇ କହିଦେବ । ସେ ସୁଧା ଏ ସୁଧା ଭିତରେ କେତେ ତଫାତ୍ —କେତେ ବ୍ୟବଧାନ !

ଭୟ ସଙ୍କୋଚରେ ଜଡ଼ସଡ଼ ହୋଇ ସୁଧା ଆସିଲା ସୁଜୀବ ପାଖକୁ । ସଂକ୍ଷେପରେ ପଚାରିଲା, ଏତେଦିନ ସୁଜୁ ଭାଇ କୁଆଡ଼େ ଉଭାନ ହୋଇଯାଇଥିଲ ?

—ଏଇ ଯାଇଥିଲି କଟକ । ତୋ ପାଇଁ ଅନେକ ଜିନିଷ ଆଣିଛି ।

ମୋ ପାଇଁ !! ଚମକି ପଡ଼ିଲା ସୁଧା ।

— ହଁ, ତୋର ପାଇଁ । ସୁଧରେ ଯିବ ଦେଇ ଆସିବି ।

ଏତିକି କଥାବାର୍ତ୍ତା ହୋଇ ସୁଧା ଫେରି ଯାଇଥିଲା ଘରକୁ ମନକୁ ଖୁସିକାନ୍ତ କରି । ସେ କେବେ ସ୍ୱପ୍ନରେ ଭୁଲି ହବ ନ ଥିଲା ତା ବିଷୟ ଭାବିବାକୁ ଏ ଦୁନିଆରେ ମଣିଷ ବି ଅଛନ୍ତି ।

ସୁଜୁ ଭାଇ ତା ଭିତରୁ ଜଣେ । ସୁଜୁ ଭାଇ କଥା ସେ ଯଦିଓ ଭୁଲି ନ ଥିଲା ତଥାପି ମନ ଉପରେ ସେ ଗୋଟାଏ କୁହୁଡ଼ିଆ ସ୍ୱପ୍ନ ହୋଇ ରହିଥିଲା । କେତେବେଳେ ଖରା ବାଜିଲେ ସେ ହୁଏତ ତରଳିଯିବ । କୁହୁଡ଼ିଆ ସ୍ୱପ୍ନଟା ଯେ ଏତେ ଜମାଟ ବାନ୍ଧି ଯାଇଛି ଏବେ ସେ ଜାଣି ପାରିଲା ।

ସୁଜୀବ ସନ୍ଧ୍ୟା ବେଳକୁ ବୁଲିଲା ବୁଲିଲା ହୋଇ ସୁଧା ଘରେ ଯାଇ ପହଞ୍ଚିଲା । ସୁଧାର ବିଧବା ମାଆ ଘରେ ନ ଥାନ୍ତି । ସୁଜୀବ କଟକରୁ ଆଣିଥିବା ସ୍ନୋ, ପାଉଡ଼ର, ବାସନାତେଲ ସବୁ ବଢ଼େଇ ଦେଲା ସୁଧା ହାତକୁ । କହିଲା—ସବୁ ଲୁଚେଇ କରି ରଖିଦେବୁ । ମୁଁ ଦେଇଛି ବୋଲି କାହାକୁ କହିବୁ ନାହିଁ । ସୁଧା ଓଠରେ ହସର ଗୋଟାଏ କ୍ଷୀଣ ଜୁଆର ଖେଳିଗଲା । ସେ ସେତକ ନେଇ ରଖିଦେଲା । ତାପରେ ଦୁହିଙ୍କ ଭିତରେ ଅନେକ ସମୟ ଧରି ଚାଲିଲା ଆଲାପ । ସହର କେମିତି ଭଲ । ସହରରେ କେମିତି ବିଜୁଳି ଆଲୁଅ ଜଳେ, ସହରରେ ସେ କମିତି ସିନେମା ଦେଖେ । ସିନେମା ଦେଖିଲାବେଳେ ତା କଥା କେମିତି ମନେପଡ଼େ, ରାତିରେ ସେ କେମିତି ତାକୁ ସ୍ୱପ୍ନ ଦେଖେ, ଏ ସବୁ ବିଷୟରେ ବେଶ୍ ଲୋଭନୀୟ ଗଳ୍ପ କହିଲା ସୁଜୀବ ।

ସୁଧାର ମନଟା କ୍ରମେ କ୍ରମେ ଢଳି ଆସିଲା ସୁଜୀବ ଆଡ଼କୁ । ତା ପରେ ଭାବର ଆଦାନ ପ୍ରଦାନ, କାହାଣିରେ ଆଦାନ ପ୍ରଦାନ, ମନର ଆଦାନ ପ୍ରଦାନ ।

ଦିନ ପରେ ଦିନ ଗଡ଼ି ଚାଲିଲା—ରାଜୀବ ଆଉ ରାଧା ଭିତରେ ଗଢ଼ି ଉଠିଲା ଏକ ପ୍ରେମର ସାମ୍ରାଜ୍ୟ. ସେ ସାମ୍ରାଜ୍ୟର ସୀମା ସରହଦ ନାହିଁ । କଥାଟା କ୍ରମେ ଗାଁ ଭିତରେ ପ୍ରସାରିତ ହେବାକୁ ଲାଗିଲା ।

ପ୍ରେମପାଗଳ ରାଜୀବ ଦିନେ ରାତିଅଧରେ ଘରର ପାଚେରୀ ଡେଇଁ ପଶିଥିଲା ରାଧା ଘରକୁ । ରାଧା ଶୋଇଛି, ରାଧା ଠାରୁ ଟିକିଏ ଦୂରରେ ଶୋଇଛି ତା ବୋଉ । ରାଜୀବ ନିଃଶ୍ୱାସରୁ ଜାଣିଲା ଦୁହେଁ ଗାଢ଼ ନିଦରେ ଶୋଇଛନ୍ତି । ସେ ରାଧାକୁ ଉଠେଇବ ବୋଲି କପାଳକୁ ଆଉଁସିଲା, ଆଙ୍ଗୁଳିକୁ ଚିପିଲା, ଓଃ କି କାଳ ନିଦ କେଜାଣି ରାଧା ମୋଟେ ଉଠିଲା ନାହିଁ । ରାଜୀବ ହାତମୁଠା ଭିତରେ ଲୁଚେଇ କରି ବଡ଼ଟେ ଟାଣିଥାଏ, ସେ ଭାବିଲା ବଡ଼ ନିଆଁର ଉତ୍ତାପ ଟିକିଏ ତା ଗାଲରେ ଲଗେଇ ଦେଲେ ସେ ଉଠି ପଡ଼ିବ. ଜଳନ୍ତା ବଡ଼ଟାକୁ ଧରି ସେ ଯେତେବେଳେ ଉତ୍ତାପ ଦେବାକୁ ଯାଉଛି ରାଧା ହଠାତ୍ କଡ଼ ଲେଉଟାଇ ଦେଲା, ସେଇଆଡ଼କୁ । କଅଁଳ ଗାଲ ଦେହରେ ଚାଉଁକିନା ଲାଗିଗଲା ନିଆଁ ଗୁଳାଟା ।

ରାଧା ହାଉଳି ଖାଇ ଉଠିଲା, ଇଲେ ବାପ ମରିଗଲି ଲୋ । ରାଧା ବୋଉ ବି ଉଠିପଡ଼ି ଲଣ୍ଠନଟା ତେଜିଦେଇ ପାଟିକରି ଉଠିଲେ ଚୋର....ଚୋର...

ରାଜୀବ ଜୀବନ ବିକଳରେ ବଡ଼ଟା ଫୋପାଡ଼ି ଦେଇ ପାଚେରୀ ଡେଇଁ ପଳାଇ ଆସିଲା । ରାଧାବୋଉ କିନ୍ତୁ ପରିଷ୍କାର ଲଣ୍ଠନ ଆଲୁଅରେ ଦେଖି ପାରିଲେ ଏଟା ଚୋର ନୁହେଁ ରାଜୀବ । ସେ କଣ୍ଠ ଫଟେଇ ଚିତ୍କାର କଲେ -ରେ ଛତର ଖିଆ, ରେ ଯୋଗମୀଖିଆ, ରେ ବାଡ଼ିପଶା ତତେ ଆଉ କୋଉଠି ଛତରଗିରି. କରିବାକୁ ଜାଗା ମିଳିଲା ନାହିଁ । ତୁ ଆସିଛୁ ମୋର ଝିଅ ପାଖକୁ, ଏଟା କଣ ଖାନକିପଡ଼ା ପାଇଲୁ ନା ବେଶ୍ୟାଘର ପାଇଲୁ; ରାତିଅଧରେ କାନ୍ଥ ଡେଇଁ ପଶିଛୁ ମୋ ଘରେ ! ରାଧାବୋଉର ଚିତ୍କାର ଶୁଣି ସାହି ଲୋକ ସବୁ ଜମା ହୋଇ ପଡ଼ିଲେ । ମଣିଷ ଦେଖି ରାଧାବୋଉ ଆହୁରି ତଣ୍ଟି ଫଟେଇ ଚିତ୍କାର କରି କହିଲେ ଏଇ ବାଡ଼ିପଶା ରଜୁଆ, ଏଇ ଛତରଖିଆ ରଜୁଆ ମୋ ଝିଅ ଗାଲରେ ବଡ଼ ଗୁଳା ଲଗେଇ ଦେଇ ଫୁଟୁକା କରି ଦେଇଛି । ଲୋକ ଦୌଡ଼ିଲେ ରାଜୀବକୁ ଧରିବା ପାଇଁ ।

ରାଜୀବ ଆଉ ଧରା ଦେଇଛି କେଉଁଠି ? ସେହି ରାତିରେ ଯିଏ ଗଲା ଆଉ ଫେରିଲା ନାହିଁ । ସେହି ତା'ର ଗାଁ ସହିତ ଶେଷ ସାକ୍ଷାତ ।

ତା’ ପରେ ଗାଡ଼ିରେ ଚଢ଼ି ପଳେଇଥିଲା ଖଡ଼ଗପୁର । ଖଡ଼ଗପୁର ସହରରେ ବୁଲୁବୁଲୁ ଗୋଟାଏ ହିନ୍ଦୁସ୍ଥାନୀ ଲୋକ ସହିତ ଆକସ୍ମିକ ଭାବେ ବନ୍ଧୁତା ହୋଇଥିଲା ରାଜୀବର । ରାଜୀବ ଯେତେବେଳେ ତାକୁ ଗୋଟିଏ ଚାକିରି ଯୋଗାଡ଼ କରି ଦେବାପାଇଁ ଅନୁରୋଧ କଲା, ସେ କହିଲା—ଚାକିରି କରି କେତେ ରୋଜଗାର କରିବୁ ପେଟକୁ ଅଣ୍ଟିବନି । ଚାଲ୍ ଆମରି ଦଳରେ ମିଶିଯିବୁ, ରାତିକୁ ହଜାର ହଜାର । କେତେ ଖର୍ଚ୍ଚ କରିବୁ କର କିଛି ପରବାଏ ନାହିଁ । ରାଜୀବକୁ ଅନେକ ପରୀକ୍ଷା ନିରୀକ୍ଷା କରିବା ପରେ ହିନ୍ଦୁସ୍ଥାନୀ ଲୋକଟି ଦଳର ଆଡ଼ା ଜାଗାରେ ନେଇ ପହଞ୍ଚେଇ ଦେଇଥିଲା । ଏହି ଦଳରେ ଥିଲେ ଚୋର, ଡକାୟତ, ପକେଟମାର, ସ୍ମଗଲର, ରେଲଗାଡ଼ିଯାତ୍ରୀଙ୍କୁ ବାଟବଣା ସବୁ ପ୍ରକାରର ଲୋକ ।

ଦୀର୍ଘ ଆଠବର୍ଷ କାଳ ରାଜୀବ ଭୁଲିଗଲା ଗାଆଁ କଥା, ରାଧା କଥା, ବାପ ମାଆ କଥା, ପରିଚିତ ଅପରିଚିତ ଲୋକଙ୍କ କଥା । ନୂଆଜୀବନର ସେ ପାଇଲା ସନ୍ଧାନ । ନୂତନ ଉନ୍ମାଦନାରେ ସେ ଲାଗିଲା ଜୀବନର ପରିସରକୁ ବ୍ୟାପକତର କରିବା ପାଇଁ । ଏହି ଆଠ ବର୍ଷ ଭିତରେ ବିହାର, ଓଡ଼ିଶା, ବଙ୍ଗଳାର ସହର ବଜାର ଗାଆଁ ଗଣ୍ଡାରେ ପ୍ରାୟ ଶତାଧିକ ଡକାୟତି, ନାରୀଧର୍ଷଣ ଲୁଣ୍ଠନ, ଗୃହଦାହ ସେମାନେ କରିଛନ୍ତି । ସେ ମଧ୍ୟରେ ଦଶଜଣଙ୍କୁ ମଧ୍ୟ ନୃଶଂସ ଭାବେ ହତ୍ୟା କରାଯାଇଛି ।

ସରଳ ନିଷ୍କପଟ କିତୁ ନାୟକର ପୁଅ ରାଜୀବ ଏହି ଆଠ ବର୍ଷ ଭିତରେ ତାର ସମସ୍ତ ଗ୍ରାମ୍ୟ ସରଳତା ହରେଇ ହୋଇ ଉଠିଛି ନୃଶଂସ, କଠୋର ନରହନ୍ତା ଡ଼କାୟତ । ଦଳ ଲୋକଙ୍କ ନିକଟରୁ ସେ ବାଃ ବାଃ ପାଇଛି । ଭାରି ଦୁଃସାହସୀ । କ୍ଷିପ୍ର ଭାବେ କାର୍ଯ୍ୟ ସମ୍ପାଦନ କରିବାରେ ଦକ୍ଷ ।

ଧରା ସେମାନେ କେବେ ପଡ଼ି ନ ଥିଲେ । ବେଶ୍ ଚାଲିଥିଲା ତାଙ୍କର ସାମ୍ରାଜ୍ୟ ବିସ୍ତାର । କି ଯୋଗରେ ଏ ଶେଷ ଚୋରିଟା କଲେ କେଜାଣି !! ଓଡ଼ିଶାର ଗୋଟେ ଲୋକ ଯାଇ ଖବର ଦେଇଥିଲା. ଭଦ୍ରକ ପାଖରୁ ଦଶମାଇଲ ଦୂରରେ ସେ ଗାଆଁଟା । ଜିପ୍ ଯିବାକୁ ରାସ୍ତା ଅଛି । ଆତ୍ମଗୋପନ କରିବା ପାଇଁ ମଧ୍ୟ ଗାଆଁର ଉତ୍ତର ପାଖରେ ବିସ୍ତୃତ ଜଙ୍ଗଲ ରହିଛି । ଡକାୟତି ପାଇଁ ବେଶ୍ ନିରାପଦ । ଗାଁଆଟା ନାଆଁ ନୀଳକଣ୍ଠପୁର । ଯାହାଘରେ ଡକାୟତି ହେବ ସେ ଲୋକଟା ଗୋଟାଏ କଣ୍ଟ୍ରାକ୍‌ଟର ଦେବେନ୍ଦ୍ର ରାଉତ । ଏଇ ପାଞ୍ଚ ବର୍ଷ ଭିତରେ ଲକ୍ଷାଧିକ ଟଙ୍କା ରୋଜଗାର କରିଛି । ଘରେ ମଣିଷ ବେଶି ନାହାନ୍ତି, ଘରଟା ମଧ୍ୟ ଗାଆଁର ଶେଷ ଆଡ଼କୁ ।

ଚୋର ପାଇଁ ଦିନ ଠିକ୍ ହୋଇଥିଲା ଡ଼ିସେମ୍ବର ପନ୍ଦର ତାରିଖ । ରାଜୀବ ଆଉ ତାର ଦଳ ଖଡ଼ଗପୁରରୁ ଆସି ରାତି ଗାଡ଼ିରେ ପହଞ୍ଚିଥିଲେ ଭଦ୍ରକରେ । ସେଠୁ ଗାଉଁଲି ଟରଣୀ ତାଙ୍କୁ ସାଙ୍ଗକରି ନେଇ ଯାଇଥିଲା ନୀଳକଣ୍ଠପୁର ।

କାହା ଘର, କିଏ ମାଲିକ ସବୁ ଟରଣୀ ବୁଝେଇ ଦେଇଥିଲା ରାଜୀବକୁ । ରାଜୀବ ଆଉ ତାର ଦଳ ପ୍ରଥମେ କଣ୍ଟ୍ରାକ୍ଟରର ଶୋଇବା ଘରେ ପଶି ତାକୁ ମାଗିଲେ ଆଲମାରି ଚାବିକାଠି । କଣ୍ଟ୍ରାକ୍ଟର ଡ଼କାୟତମାନଙ୍କୁ ଦେଖି ଦବିଯାଇ ନ ଥିଲା, ଆକ୍ରମଣ ଆରମ୍ଭ କରି ଦେଇଥିଲା ସେମାନଙ୍କ ଉପରେ । ରାଜୀବ ନିଜ ପକେଟରୁ ଛୁରିଟା କାଢି ଭୁସି ଦେଇଥିଲା କଣ୍ଟ୍ରାକ୍ଟର ପେଟରେ । ସେଇଠି ସେ ଚିତ୍କାର କରିପଡ଼ିଗଲା । ତକିଆ ତଳୁ ଚାବିକାଠି ନେଇ ସେମାନେ ଆଲମାରି, ସିନ୍ଦୁକ ବାକ୍ସ ଖୋଲି ଯେଉଁଠି ଯାହା ଟଙ୍କା ପଇସା ଥିଲା ସବୁ ହସ୍ତଗତ କରିଥିଲେ । ଶେଷରେ ରାଜୀବର ଦୃଷ୍ଟି ପଡିଥିଲା ତା ସ୍ତ୍ରୀ ଉପରେ । ସ୍ତ୍ରୀର ବେକରେ ଥିଲା ଚାରିଟା ସୁନାହାର । ସେତକ ଛଡ଼େଇ ନେବାପାଇଁ ରାଜୀବ ଯେତେବେଳେ ପାଖକୁ ଯାଇ ଛ' ସେଲିଆ ଟର୍ଚ୍ଚଟାକୁ ପକେଇ ଦେଲା କଣ୍ଟ୍ରାକ୍ଟର ସ୍ତ୍ରୀର ମୁହଁ ଉପରେ ହଠାତ୍ ଭୂତ ଦେଖିଲା ପରି ଚମକ ପଡ଼ିଲା ରାଜୀବ । ଆରେ ଏ ଯେ ରାଧା...ସେ ସ୍ୱପ୍ନ ଦେଖୁ ନାହିଁ ତ !! ପୁଣି ଆଉଥରେ ଆଲୁଅଟା ପକେଇଲା ମୁହଁ ଉପରକୁ ଚନ୍ଦ୍ର ଦେହରେ କଳଙ୍କପରି ରାଧା ମୁହଁରେ ସେହି ବଡ଼ ପୋଡା ଦାଗଟା ଏବେ ବି ବିଦ୍ୟମାନ ।

ଅଃ କି ଦୁର୍ଯୋଗ ! କାହାର ସର୍ବନାଶ କଲା ସିଏ । ରାଜୀବର ମୁଣ୍ଡଟା ଯେମିତି ଘୂରେଇ ଦେବାକୁ ଲାଗିଲା । ସେ ଅନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲା ଶୀଘ୍ର ପଳେଇ ଚାଲ; କିନ୍ତୁ ନିଜେ ରାଜୀବ, ରାଧାର ମୁହଁକୁ ଚାହିଁ ବୋକା ପାଲଟି ଯାଇଛି । ପାଟିରୁ ତାର କଥା ବାହାରୁ ନାହିଁ ।

କଣ୍ଟ୍ରାକ୍ଟର ଚିତ୍କାର ଶୁଣି ଗାଆଁ ଲୋକ ସବୁ ଘର ଚାରିଆଡ଼େ ଜମି ଯାଇଥିଲେ । ରାଜୀବ ଧରା ପଡିଥିଲା ଗାଆଁ ଲୋକଙ୍କ ହାତରେ । ଅନ୍ୟମାନେ ଖସି ପଳାଇଥିଲେ । ରାଜୀବର ହାତ ଗୋଡ଼ ବାନ୍ଧି ଗ୍ରାମବାସୀ ଖୁବ୍ ମାଡ଼ ଦେଇଥିଲେ । ଏକ ପ୍ରକାର ଦରମରା ହୋଇଯାଇଥିଲା ରାଜୀବ ।

ତା ପରେ ଥାନାରୁ ପୋଲିସ ଆସିଲେ, ରାଧା ସ୍ୱାମୀର ଶବ ଡାକ୍ତରୀ ପରୀକ୍ଷା ପାଇଁ ଭଦ୍ରକ ଗଲା । ପୋଲିସ ବାଲାଙ୍କର ଗତାନୁଗତିକ କାର୍ଯ୍ୟ ଚାଲିଲା । ରାଜୀବ ସହିତ ଧରାହେଲେ ତା ଦଳର ଅନ୍ୟଲୋକେ ।

ବାଲେଶ୍ୱରରେ ଜଜ୍ କୋର୍ଟରେ ଚାଲିଲା ବିଚାର । ରାଧା ଆସିଥିଲା ରାଜ-ସାକ୍ଷୀ ହୋଇ । କାଠ ଗାରଦ ଭିତରେ ଛିଡ଼ା ହୋଇ ଚାହିଁଲା ସମସ୍ତଙ୍କ ମୁହଁକୁ, କିଏ ମାରିଥିଲା ତାର ସ୍ୱାମୀକୁ । କାହାକୁ ଦେବ ସେ ପରିଚୟ ?? ରାଜୀବକୁ ଦେଖି ତା ଆଖି ତଳକୁ ନଇଁ ଯାଇଥିଲା । ସେ ଥର ଥର କଣ୍ଠରେ କହିଥିଲା ଅନ୍ଧାରରେ କିଏ ମାରିଲା ତାର ସ୍ୱାମୀଙ୍କୁ ସେ ଦେଖି ନାହିଁ, କିନ୍ତୁ ଏହିମାନଙ୍କ ଭିତରୁ କିଏ ଜଣେ ଛୁରିରେ ଭୁସି ଦେଇଛି ।

ଦେଢ଼ ବର୍ଷ ଧରି ଚାଲିଲା ବିଚାର । ରାଜୀବ ନିଜେ ସ୍ୱୀକାର କରିଥିଲା କଣ୍ଟ୍ରାକ୍ଟରକୁ ସେ ଛୁରି ଭୁସିଛି । ଶେଷରେ ରାଜୀବ ଆଉ ପାଞ୍ଚଜଣ ଡକାୟତଙ୍କୁ ହୋଇଥିଲା ଯାବଜ୍ଜୀବନ କାରାଦଣ୍ଡ ।

ଏହି ଦଣ୍ଡ ପାଇଁ ରାଜୀବ ଦୁଃଖିତ ହୋଇ ନଥିଲା । ରାଧାର ସ୍ୱାମୀକୁ ହତ୍ୟା କରି ସେ ଯେ ଏହାଠାରୁ ଅଧିକ ଶାସ୍ତି ପାଇବା ଉଚିତ ଏ କଥା ସେ ମନେ ମନେ ସ୍ଥିର କରି ନେଇଥିଲା ।

*        *        *        *

ଜେଲ୍ ଘଣ୍ଟାରେ ଠଙ୍ଗ୍ ଠଙ୍ଗ୍ ହୋଇ ଛ'ଟା ବାଜିଲା । ଓ୍ୱାର୍ଡ଼ରମାନେ କଇଦୀମାନଙ୍କୁ ହାଜତ ଭିତରେ ଭର୍ତ୍ତି କରିଦେଲେ । ରାଜୀବ ବିକଳ ଆଖିରେ ଚାହିଁ ରହିଥାଏ କୃଷ୍ଣ ଓ୍ୱାର୍ଡ଼ର ଆସିବା ବାଟକୁ, କେତେବେଳେ ଆସି ବିଡ଼ି ଦ'ଟା ଦେଇଯିବ । ଧୂଆଁ ଢ଼ୋକେ ଟାଣିଲେ କେତେ ତୃପ୍ତି କେତେ ଆନନ୍ଦ !



# ଆଉ ଉଜେଡ଼ ଉପବନକୁ

ଶ୍ରୀନିବାସ ଉଦଗାତା

ସେ ପିଲାଟି କାନ୍ଦୁଥିଲା । ସେ କାନ୍ଦିବାଟା ଆଗ କାନ୍ଦିବାଠାରୁ ନିହାତି ଭିନେ । ସେତେବେଳେ ସେଇ କାନ୍ଦଣାର ସ୍ୱର କେତେ ଭିତରୁ ବାହାରୁଥିଲା କେଜାଣି....ସେ ଗୋପନ ଆଉ ଅଜଣା ଆନନ୍ଦଟିକୁ ଠଉରେଇବା ବି ସହଜ ନୁହେଁ । ଏଇନେ କାନ୍ଦିବା ଭିତରେ କିନ୍ତୁ ବେଶୀ ପରିମାଣରେ ଫୁଟି ଉଠୁଥିଲା ବାହାରର ପୀଡ଼ାଟିଏ । ଫରକଟି ସେମିତି ବିଶେଷ କିଛି ନୁହେଁ --ସତେ ଯେମିତି ନିହାତି ଅଦୁରୁଣିଆ ଗାରଟିଏ ଦୁଇ କଥାଟି ମଝିରେ ଟାଣି ହୋଇ ରହିଛି ଆଉ କେତେବେଳେ କୋଉ ଦିଗକୁ ପାଦ ଢ଼ଳବ କେଜାଣି । ସେତେବେଳେ ତା'ର କାନ୍ଦଣାକୁ ଯେଉଁମାନେ ଦେଖୁଥିଲେ ସେମାନେ ଅଦୃଶ୍ୟ ଆଦରର କାନିରେ ସତେ ଯେମିତି ତା'ର ଲୁହ ନିଗିଡ଼ା ଆଖିକୁ ପୋଛି ଦେଉଥିଲେ ଆଉ ସେମାନଙ୍କ ଆଖିରେ ଥିଲା ତା'ପାଇଁ ଦରଦ । ଆଉ, ଆଜିର ଦେଖିଲା ଆଖିଗୁଡ଼ିକରେ ପୂରି ରହିଥିଲା ତାମସା ଦେଖା ଆମୋଦ ଆଉ ସୁଆଳ—ସତେ ଯେମିତି ଅଧିକାର ନ ଥାଇ ସେ କାନ୍ଦୁଥିଲା । ସମସ୍ତଙ୍କର ସତରେ କଣ କାନ୍ଦିବାର ଅଧିକାର ଅଛି ?

ବାରଣ୍ଡା କାନ୍ଥରେ ଆଉଜା ହୋଇଥିଲା ଛୁଣ୍ଡା ମଣିଷଟି । ଗୁଡେଇ ହୋଇଥିଲା ଅଖା ଦିଖଣ୍ଡ ଆଉ ତା ଭିତରୁ ହାଣ୍ଡି ଦେଖିଲା ଭଳି ପଦାକୁ ଉକୁଟି ଆସିଥିଲା କୋତରା ମଣିଆ କଣ୍ଠାରୁ ଦୁଲାଏ । ତା' ବିଛଣା । ସ୍ତୁପ ପାଖରେ ଭିଡ଼ିଧରି ରଖିଥିଲା କଳା ପୁଟୁଳିଟିଏ ପିଲାଟି । ସତେ ଯେମିତି ତାରି ଭିତରେ ଜଗତର ସବୁ ଐଶ୍ୱର୍ଯ୍ୟ ଠୁଳ ହୋଇ ରହିଛି, ଏବଂ ତାକୁ ସେ ପରମ ଆଦରରେ ଆବୋରି ଧରିଥିଲା ଓ ଢଳଢଳ ଛିମାଛିମା ଆଖିରେ ସେ ସବୁ ଆଡ଼କୁ ଦେଖୁଥିଲା । ସେଇ ଅପଲକ ନିସ୍ପୃହ ଆଖିରୁ ଅପୋଛା ଅସରା ଲୁହ ଗଡ଼ିଆସୁଥିଲା ଗାଲ ଭିଜେଇ । ସେ ଗଡ଼ି ଯିବାର ଯେମିତି କିଛି ମାନେ ନାହିଁ, ତାକୁ ପୋଛିବାର ବି ସେମିତି କିଛି ଲୋଡ଼ା ନାହିଁ ହୁଏତ !

'କଣ ମାଗଣା ପଡ଼ିଛି ଟଙ୍କା ! ଗଣି ଦେ ଠଣଠଣ ଆଉ ଯା' ।"

"ଯାଉନୁ ତୁ, କୁଆଡ଼େ ଯିବୁ ଯା ! କାଲି ସକାଳୁ ପେଟ ଜଳିଲେ ସବୁ କଥା ମନେ ପଡ଼ିଯିବ ଯେ !"

"ଏତେ କଥା କାହିଁକ ଯେ, ତୋ ବାପ ଯୋଉ ଗଣି ନେଲା, ସେତକ ଗଣି ଦେ ଆଉ ଯା' ତୋ ବାଟରେ । କଏ କଣ ବାନ୍ଧି ରଖିଛି କ ତୋତେ !"

"କ କୋଉ ମାଗଣାରେ ରହୁଛୁ । କାଲ ମନ୍ଦରଗ ଯାହା ହେଲଣି ସେଥିରେ ଜଣେ ଖାଇଲେ ଦନକୁ ପାଞ୍ଚଟଙ୍କା ଖାଇଯିବ ।"

ବହୁ ପ୍ରଶ୍ନ ଏବଂ ଅନେକ ଆଁଖିର ଖର ବନ୍ଧଲପଣ ସ୍ଥହାଣୀ, କୋଉ କଥାର ମୁକାବଲା କରବ ଖବପାରୁ ନ ଥାଏ ପିଲଟି । ସବୁ କଥାକୁ ଶୁଣୁଥାଏ ଆଗ୍ରହସ୍ଥାନ ଆଖିରେ !

ହଁ ସେଦନ ତା'ର ବାପ ଆସିଥିଲ । ସାତ ଅଠନ୍ଧାତ ମଇଲା ସିଆଁ ଧୋତଟିଏ ପିନ୍ଧିଥିଲ । ତେଲ ଚଟଲଗା ଅଣ ଓସାର ଗାମୁଛଟିଏ ଭିଡ଼ିଥିଲ ଅଣ୍ଟାରେ । ଅଚ୍ଛଣ୍ଡା ମେହନତରେ ବଳାନ୍ ବଢ଼ିଲ ଦେହର ପାଶଲ ପଣରେ ଉଲସି ଉଠୁଥିଲ ଦୁଇବାହୁ ଆଉ ପୃଶଲ-ପୃଶଲ ଗୋଡ । ଆଖିରେ ଥିଲ ଅମାପ ଦମ୍ଭ ଆଉ ଆକୁତର ଶୂନ୍ୟତା ।

"କଣ ଆଉ ଅଛ ବାବୁ ! ଯୋଉମାନେ ମୁଲ ଲଗାନ୍ତେ ସେମାନେ କଣ କରବେ ଖବୁଛନ୍ତ । ଆମକୁ କଏ କାମ ଦେବ ? କାମ ନ ଥାଇ ମୁଠିଏ କଏ କାହିଁକ ଦେବ ? ନ ହେଲେ ଦେହ ଲଗେଇ କାମକଲ ମଣିଷ ଅମେ, ହାତ ପତେଇ ମାଗୁନୁ ତ ? ଖାଲ ନଗାଡ଼ ପେଟ ଭରୁଛୁଁ । କୋଉ କଥାକୁ ଡରନ୍ତୁ !"

କାନ୍ଥକୁ ଆଉଜ ଠିଆ ହୋଇଥିଲ ତାର ସ୍ତ୍ରୀଟି । ଧୋଇଶୁଖେଇ ପିନ୍ଧୁଥିବା ରଙ୍ଗଛଡ଼ା ଶାଢ଼ୀଟିର କାନରେ ଅଧା ଘୋଡ଼େଇ ହୋଇ ଠିଆ ହୋଇଥିଲ ଏଇ ପିଲଟି ସେତେବେଳେ । କେତେ ଅଭୟ, କେତେ ସୁରକ୍ଷା ସତରେ ମିଳେ ନାହିଁ ସେଇଠି । ବାଆ ବତାସ, କାକର ଓ ପାଣି ସବୁକଛୁ ଦୂରେଇ ରହେ ତା'ଠାରୁ । ସେଇଠି ପଶଗ୍ଭଇଜ ପାଖରେ ଆସେ ଯୋଉଠି ସ୍ଥାସ୍ତମୋଦ ଫୁଲ ହୋଇ ଫୁଟନ୍ତ, ବଇଁଶୀ ବାଜେ ଆଉ ମନମତାଣିଆ ଗୀତ ବୋଲ ଉଡ଼ ବୁଲନ୍ତ ପକ୍ଷୀମାନେ ।

"ସେଇଥିଲାଗି ଘର ଗ୍ରୁଡ଼, ଗାଆଁ ମଣିଷ କଥା ଭୁଲ ଭୁଲେଇ ଯିଏ ଯୁଆଡ଼େ ପଳେଇ ଗଲେଣି ବାବୁ । ବାଡ଼ ଗୁହାଳରେ ଯାହା ଯେମିତ ପଟେ ଅଧେ ଥିଲେ...କାନରେ ନାକରେ ଯା'ର ଯୋଉଠି ଧାନେ ସୋଶସେ ଥିଲ, ଗୋଡ଼ ମାଟି ମୂଳରେ ବନ୍ଧ ଖର୍ଚ୍ଚ ଯୋଉ କେତେ ଦନ ଚଳଗଲ ଚଳଗଲ । ସେଥିରେ କେତେଦନ ଚଳନ୍ତା । ଆମେ କାମ ଖୋଜ ଆସିଛୁଁ ।

ଏଇ ଯେଉଁ ବେଳେ ପାଖରେ ଠିଆ ହୋଇ ଶୁଣୁଶୁଣୁ ଗୃହିଣୀ ଆହା କଲେ । ସହାନୁଭୂତିରେ ଅଖି ଜକେଇ ଆସିଲା ତାଙ୍କର । ପଦାକୁ ବାହାରିଗଲେ ପିଲମାନେ ଖେଳିବାକୁ ! ସଭିଏଁ ଥରେ ଥରେ ପଶ୍ଚିଗଲ ପଶ୍ଚିଗଲ ଆଖିରେ ଦେଖିଗଲେ ପିଲାଟିକୁ । ଯେମିତି ହୁଏତ ସେମାନଙ୍କ ଗୃହିଣୀରେ ଏକ ନଷ୍ଟପଟ ଡାକଣି ଥିଲା । ସେତେବେଳେ ସେଇମାନଙ୍କୁ ଅବୁଝା ଅଖିରେ ଅନେଇ ଥିଲା ସେଇ ଟୁଆଟି । ଥରେ ତା' ମା' ମୁହଁକୁ ଥରେ ଗୃହିଣୀଙ୍କ ମୁହଁକୁ ଚାହିଁ ଥିଲା । ତୁଳନା କେଜାଣି କରିଥିଲେ କରିଥିବ...ତା' ମା ଆଉ ସାମନାରେ ଠିଆ ହୋଇଥିବା ମାଆଟିକୁ ନଜେ ନଜେ ପରଖି ଚାହିଁଲ ଥିବ ହୁଏତ ।...ମାଆଟି କନ୍ତୁ ଅନେକ କଥା ଭାବିଥିବ । କେତେ ରକମରେ ଆପଣା ପୁଅଟିକୁ ରାଜକୁମାର ଭଳି ସଜେଇ ଥିବ । କେତେଭଳି ସପନ ଦେଖି ନ ଥିବ !

ହେଲେ କଣ ମାନେ ଅଛି ସେ ସ୍ୱପ୍ନର ! ମଣିଷର ସପନ ଦେଖା କେତେ ବେଳେ କଣ ସରେ !

"ପିଲଟି ତମ ପାଖରେ ରହୁ । ଆମେ ଏଣେତେଣେ ଘୁରିବୁଲି କୌଣସି ମତେ ବଞ୍ଚିଯିବୁଁ । ପାଇଲେ ଚଳିବୁଁ, ନ ପାଇଲେ ଚଳିବୁଁ ବି । ପୁଅ ନ ଖାଇ ଶୋଇଛି ଏ କଥା ତ ଭାବିବୁଁ ନାହିଁ ତମର ପୁଅଝିଅ ଅଛନ୍ତି ମା, ତାଙ୍କର ପାଳଟା ଅଇଁଠାରେ ରହିବ ପିଲଟି । କେତେବେଳେ କଣ ବୋଲି ହାକ କରି ଦେବ ଯେତିକ ପାରିବ ।

'ନୁହଁ ଅଉ କଣ !'

'ରହିବୁ ଏଇଠି ? ସେ ଦିନର ଏଇ ଆଦର ମିଶା ପ୍ରଶ୍ନର କୌଣସି ଉତ୍ତର ଦେଇ ପାରି ନ ଥିଲା ପିଲଟି । ସେ ତା'ର ବାପ ମୁହଁକୁ ଚାହିଁଲା ଥରୁଟେ, ପ୍ରଶ୍ନର ଜବାବ ଆଶାରେ ଆଉ ଏକ ବିରାଟ ଶୂନ୍ୟତା ହୁଏତ ଦେଖିଥିଲା ।

ଦି' ମାସ ପାଇଁ ବାପମାଆ ତା'ର ରହିଥିଲେ ସେଇଠି । ସେଇ ଘରେ ନୁହେଁ, କୋଉ ଅନ୍ୟ ଘରର ବାରଣ୍ଡାରେ ଚୁଲି ଅଖାର ଘୋଡ଼ଣୀ ଲଗେଇ । ତା ପାଇଁ ବି ପଇସା ଦେବାକୁ ହୁଏ...ଦୁଇଟି ପେଟଲାଗି ମୂଲ ଲାଗିବାକୁ ହୁଏ । ପିଲାଟି ଏ ଘରେ ଦିନସାରା ରହି ସଞ୍ଜବେଳକୁ ବାପମା ପାଖକୁ ଚାଲିଯାଉଥିଲା ପନ୍ଦରଲେ ପନ୍ଦରଲେ । ପରେ ଆଉ ଗଲାନାହିଁ ।

ଦିନ ଆସିଲା ଯୋଉଦିନ ଷାଠିଏଟି ଟଙ୍କା ନେଇ କାଗଜରେ ଟିପ ଲଗେଇ ବାପା ତା'ର ଚାଲିଗଲା । ପିଲାଟିକୁ ରଖିଗଲା । ସେଇ ପଇସାଟି ସେଦିନ

ଫେରେଇ ଦେବ, ଯୋଉଦିନ ଫେରେଇ ନେବ, ଝିଅଟିକୁ । ଆଉ ସେତକ ଦିନ ବୋଲହାକ କରୁଥାଉ ପିଲଟି ।

ସେ ସେଇ ଦିନରୁ ଅଛି ।

ଆଜି ସେଇକଥା ପଡ଼ୁଛି । କଣ ମାଗଣା ପଡ଼ୁଛି କି ? ଖବର ଦେ' ତୋ' ବାପକୁ , ଠଣାଠଣ ଗଣି ଦେଉ ଯୋଉ ଟଙ୍କା ନେଇଛି । ତୁ ଦେଖିନୁ କେମିତି ନେଲ ? "ପଚରା ହେଉଛି । କାନ୍ଦିଲା ସ୍ୱରରେ ପିଲଟି ହଁ କରୁଛି । ପୁଣି ପଚରା ଯାଉଛି" ହଁ ତ କରୁଛୁ, ଲୁଚି ପଳଉଥିଲୁ କୁଆଡ଼େ ? ଚଉଦ ଭୁବନରେ କୋଉଠି ଲୁଚନ୍ତୁ ତୁ ? ଯୋଉଠୁ ହେଲେ ତୋତେ ଆଉ ତୋ ବାପକୁ ବାନ୍ଧି ଆଣିବେ ପୁଲିସ ବାଲା । '

ତା'ର ଅଜାଣତରେ ଆରଘରେ ମନ୍ତ୍ରଣା ଚାଲିଛି । "ତାକୁ ଜବତ କରିବା କଥା ଯିଏ ତାକୁ ଧରେଇଲା । ପଳେଇ ଯିବା କଥାଟି ବତେଇଲା ।

...କାମ ତା'ର କିଛି ନାହିଁ । ଦଶ ବର୍ଷର ପିଲା । ଦ... ଲ ପାଇଲେ ପେଟେ ଗିଳୁଚି ବାସନ କୁସନ କେଇଖଣ୍ଡ ମାଜୁଚି, ପାଣି ଭରୁଚି —ପୁଣି ମାଜୁଚି ପୁଣି ଭରୁଚି । ଦଶବାର ଜଣକର ପାଣିଟିକକର ବ୍ୟବସ୍ଥା କରିଦେଲେ ପାଇଟି ଶେଷ ।...ରାତି ଦଶ ଏଗାରଟା ବେଳକୁ ପୁଣି ପେଟେ ଭରି ଶୋଉଛି—

ଯିଏ ଆଜି ପଳେଇ ଯାଉଥିଲା । ତାକୁ ବାହାର କରି ଭିଡ଼ି ଆଣିଥିଲେ ପିଲାଏ ।

ଆଉ ଯିଏ ବଳବଳ କରି ଅନେଇ ଥିଲା ।

ଜଗନ୍ନାଥଙ୍କ ଚକାଆଖି କାନ୍ଥରେ ମ ଆର ଦସ୍ଥାପୂରିତ ସ୍ତନ ଦେଖା-ଯାଉଥିଲା । ସତରେ ପ୍ରଭୁ ପେଟର ଇଲାକା ଏ ପୃଥିବୀର ଇଲାକାଠାରୁ ବଡ଼ ।

ଥରେ ବାପ ଡ଼ାକିଲାରୁ ଯାଇ ନ ଥିଲା ସେ ମନ୍ଦିରେ, ନୂଆ ମା'ଆଖିର ଅମାପ ସ୍ନେହଡୋରେ ବନ୍ଧା ହୋଇ । ଆଜି ପୁଣି କାହିଁକି ପଳାଉ ଥିଲା ?

...ପୁଣି ସ୍ନେହ ଅଜାଡ଼ା କଥାର ନାଟକ ଆରମ୍ଭ ହେଲା ।...

'ଶୁଣ ତତେ କିଏ ଧରି ବାନ୍ଧି ରଖିନି । ପିଲାଟିଏ, ଯିବୁ ଯଦି ତତେ କିଏ ରଖିବ ? ତୁ ଆମ ଗରଜରେ ଅଛୁ ନାଁ ତୋ ଗରଜରେ ଅଛୁ ? ବାପ ତୋ'ର ଟଙ୍କା ନେଲା । ତୁ ଏଠି ଆମରି ଖାଇପିଇ କାମ କରୁଛୁ । ତୋ ବାପକୁ ଖବର

ଦେଲେ ଆସିବ ସିଏ । ଟଙ୍କା ଫେରେଇ ଦେନ, ତେବେ ନେଇ ଯିବ ସାଙ୍ଗରେ । ଆମର କଣ ଲୋଡ଼ା ଟଙ୍କା ମିଳିଲେ ହେଲା । ··

ଜଣେ କେହି କହିଲେ, ବାଅ ସ୍ୟାର୍ ପୁଲିସକୁ ଜଣା ବ କଥା ଶୁଣେଇ ନେଉଥିଲା କହିଲେ ହେଲା ।...

କରୁଣ ଆଖିରେ ଦେଖିଲା ପିଲାଟି । ଥରିଲା ଥରିଲା ଓଠ । ଢଳଢଳ ଆଖି । ନିସ୍ପୃହ ଆକୁତି ଆପେ ଆପଣାଛୁଏଁ ଝରି ପଡ଼ିଲା କଣ ପୁଛୁଛି । ପୁଛୁଛି । ଚିରା ଜାମା ପ୍ୟାଣ୍ଟ ବ ଖଣ୍ଡ....ବାସ ହେଉଛି ।

କେତେ ଅପଲକ ତାହାଣା ଆଖିରେ ଅନେଇ ରହିଛନ୍ତି ତୁ ? କେତେ ଲୋଭରେ ଶ୍ରୀଭୁଜ ମେଲେଇ କୋଳାଗ୍ରୁନ ସେବାକୁ ଯୁଦ୍ଧି ବସିଛୁ । ବଳଆର ଭୁଜ । କେତେକାଳକୁ ଆଉ ମଣିଷ ମଣିଷକୁ ସେହି ଆଖିରେ ଦେଖିବ ଆଉ ଭଲ ଧରିବ ଗୁଡରେ···।

# ବିସ୍ମୃତ ଭାସ୍କର

ପ୍ରାଣବନ୍ଧୁ କର

ଚକ୍କାର ! ଗଲାଫଟା ଚକ୍କାର ! ହଠାତ୍ କେଉଁଠି ଯିମିତ ଗୋଟାଏ ବାଜ ପଡ଼ିଗଲା ! ପରିବାରର ପ୍ରତ୍ୟେକ ସଭ୍ୟଙ୍କ ମୁହଁରେ ଆତଙ୍କ—ସମସ୍ତେ ବାରଣ୍ଡାକୁ ଚାଲି ଆସି ଚାରିଆଡ଼େ ଚାହୁଁଛନ୍ତି କିନ୍ତୁ ବୁଝି ପାରୁନାହାନ୍ତି ଚକ୍କାରଟା ଆସୁଛି କେଉଁଠୁ ।

ଛଅ ବର୍ଷର ଶିଶୁ ପିପା ସେମାନଂକ ପାଖରେ ଆସି ଠିଆହେଲା—ସମସ୍ତଙ୍କ ମୁହଁରେ ସେ କ'ଣ ଦେଖିଲା କେଜାଣି ତା'ର ହସ ହସ ମୁହଁଟି ଗମ୍ଭୀର ହୋଇ ଉଠିଲା - ତା ବାବାଂକ ମୁହଁକୁ ଚାହିଁ ଆଖି ବଡ଼ ବଡ଼ କରି କହିଲା—ବାବା.......
ଜେଜେବାପା !

ତା ବାବା ଚପାଗଲାରେ ପିପାକୁ ଚାହିଁ କହିଲେ--ଚୁପ୍...... ପାଟି କରନା... ....

ସମସ୍ତେ ଅତି ସନ୍ତର୍ପଣରେ ଗୋଟିଏ କୋଠରୀ ଭିତରେ ପଶିଲେ ପୁଣି ଶୁଣିଲେ ଚକ୍କାର···· ଅମଙ୍କ ଛୁଡ଼ା ହୋଇଗଲେ ସମସ୍ତେ..... ଘୋର ଜଙ୍ଗଲରେ ଗୁମ୍ଫା ଭିତରୁ ବାଘ ଗର୍ଜନ ଶୁଣି ଯେମିତ ବାଟୋଇମାନେ ଅମଙ୍କ ଛୁଡ଼ା ହୋଇଯାନ୍ତି ···

ଗୋଟିଏ ପଥର ପାଓ୍ୱାର ହାଲବଲ୍‌ରେ ଆଲୋକିତ ପିଢ଼ାଘର ଭିତରୁ ଆସୁଛି ମେଘ ଗର୍ଜନ ······

····· ଅସଭ୍ୟ, ବର୍ବର, ପାଷାଣ୍ଡ ଏମାନେ .....ଏମାନେ କୁଆଡୁ ବୁଝିବେ ତୁମର ମହତ୍ୱ.......ତୁମେ କେଡ଼େ ବିରାଟ, କେଡ଼େ ମହାନ୍ ତୁମେ, କେଡ଼େ କେଡ଼େ ବଡ଼ ଏ ମୂର୍ଖମାନେ ବୁଝିବେ କୁଆଡୁ ? 'ଇସ୍ ' ମୁଁ ଭାବି ପାରୁନି ତୁମକୁ କିମିତି ଏମାନେ ଏଇ ତାବଲର ଆଳୁକୁଚି ମାଲକୁଚି ଭିତରେ ଆଣି ଫୋପାଡ଼ି ଦେଇଛନ୍ତି ! ଅଥଚ ମୁଁ ଚାରିଦିନ ଧରି ତୁମକୁ ଚାରିଆଡ଼େ ! ଖୋଜୁଛି

ପରିବାରର ପୁଅ, ବୋହୂ, ଝିଅ, ନାତି ନାତୁଣୀମାନେ ହଠାତ୍ ଆଉ ଏକ ଭିନ୍ନ ଗୁରୁଗମ୍ଭୀର କଣ୍ଠସ୍ୱର ଶୁଣିବାକୁ ପାଇଲେ—ସ୍ତ୍ରୀସ୍ୱରର ଶେଷ 'ସ୍ୱା' ପର୍ଦ୍ଦାରେ—କିନ୍ତୁ ପୁରୁଷ କଣ୍ଠରେ 'ସ୍ୱା' ନୁହେଁ ଏଥର ନାରୀ କଣ୍ଠର......

—ମତେ ସବୁ ବାଟ ଗୁଣ୍ଡିବଟି ହଠାତ୍ ଗୋଟାଏ ସାପ ଦେଖିଲେ ଯେମିତି ଲୋକମାନେ ଗୁନଅଁରେ ଛନ୍‌ଛନ ହୋଇଯା'ନ୍ତି ଆଖି ପିଛୁଳାକେ, ଠିକ୍ ସେମିତି ପରିବାରର ବାଳକଟି ଗୃହର ଅମାପ ଶକ୍ତିମୟୀ ଗୃହକର୍ତ୍ତ୍ରୀଙ୍କର ତୀକ୍ଷ୍ଣ କଣ୍ଠସ୍ୱରରେ ଛନଛନ ହୋଇ ବାଟ ଗୁଣ୍ଡିଦେଲେ ବାଡ଼ି ଘର ଅଣଓସାରିଆ କବାଟ ପାଖରେ ଠିଆ ହୋଇପଡ଼ି ଗୃହକର୍ତ୍ତ୍ରୀ ଚିଡ଼ି ଗୁଣ୍ଡିଲେ--

—କଅଣ ହେଲା ? ମଣିଷକୁ କଅଣ ହିଦଏ ଠାକୁରପୂଜା କରେଇ ଧାନ ?

ପ୍ରଥମ ଝଙ୍କାରର ଧ୍ୱନିର ତୀବ୍ରତାକୁ ଅପରିବର୍ତ୍ତିତ ରଖି ଗୃହକର୍ତ୍ତ୍ରୀ କହିଲେ—କଅଣ କହିଲ ? ଠାକୁର ପୂଜା ? ତମର ଜଗନ୍ନାଥ, କଟକଚଣ୍ଡୀ, କାଳି ସଂତୋଷ ପୂଜା ? ଘରଭିତର ନବାବିଷ୍କୃତ ଦେବୀ ତମର ସନ୍ତୋଷୀ ମାଙ୍କ ପୂଜା ? —

କର୍ତ୍ତ୍ରୀଙ୍କର କଣ୍ଠସ୍ୱରର ତୀବ୍ରତା ସହିତ ତାଳ ରଖି କର୍ତ୍ତା ଉତ୍ତର ଦେଲେ— ନାହିଁ ତମର ପୂଜା କରୁଥାନ୍ତି--

ମୋ ପୂଜା ତ ତମେ ସକାଳୁ ଉଠି ଶୋଇଲାଯାଏଁ କରୁଚ, ଆଜିକି ପଇଁତିରିଶ ବର୍ଷ ଧରି କିନ୍ତୁ ସ୍ତ୍ରୀଙ୍କ ପୂଜା କେବେ ହେଲେ ଥରେ କରିଚ !

—ସ୍ତ୍ରୀଙ୍କ ପୂଜା ?

—ହେଇ ଦେଖ, ସ୍ତ୍ରୀଙ୍କର ପୂଜା

କର୍ତ୍ତ୍ରୀ ଆଉ ଟିକିଏ ମୁହଁ ଟେକି ଦେଇ ଗୃହିଲେ କର୍ତ୍ତାଙ୍କ ଆଡେ... ତାପରେ କହିଲେ – ଓଃ !

କର୍ତ୍ତ୍ରୀଙ୍କର ଏଇ ତାଚ୍ଛଲ୍ୟମିଶା କଥା ପଦକରେ ଆହୁରି ଗର୍ଜିଉଠି କର୍ତ୍ତା କହିଲେ —ଦେଖ, ଖବରଦାର କହି ଦଉଚି ମତେ ଯେତେ ପାରୁଚ ଅପମାନ କର— ହେଲେ ଏଇ ଦେବତାଙ୍କର ଅପମାନ ମୁଁ ସହ୍ୟକରି ପାରିବିନି···ସ୍ତ୍ରୀଙ୍କୁ ଏ ଚାଉଳ ଭିତରେ ଫୋପାଡ଼ିଲା କିଏ ? ଘର ବଦଳେଇଲା ଦିନଠୁ ମୁଁ ଖୋଜି ହଉଚି—ଅଥଚ ସେ ଚାଉଳର ଯାବତୀୟ ଡବ୍ବା ଆସବାବ ଭିତରେ ମୁହଁ ମାଡ଼ି ପଡ଼ିଛନ୍ତି···

—କିଏ ତାକୁ ତା ଭିତରେ ରଖିଲା ମୁଁ କେମିତି କହିବି—ଘର ବଦଳା ଗୋଳମାଳ ଭିତରେ କିଏ ରଖିଦେଇଥିବ—

— ମୁହଁ ହସୁଥିଲା କଥାଙ୍କୁ ଘୃଣା ହୋଉ । 'ଡାକୁ' କଅଣ କହୁଚ ? କହ 'ଡାକୁ'…

—ହଁ ହଁ, ଡାକୁ ସ୍ୱାମୀ ଆଙ୍କୁ ଦେଖିବା କହି କର୍ତ୍ତ୍ରୀ ବାହାର ଯାଉଥିଲା ବେଳେ ବଡପୁଅ ପଚାରିଲା— ମା, ବାପା କୋଉ ଦେବତାଙ୍କ କଥା ନେଇ ଏମିତ ଉତ୍ୟକ୍ତ ?

—କୋଉ ଦେବତା 'ଆଜି, ତମ ବାପା ଯୋଉ ଦେବତାଙ୍କୁ ସକାଳୁ ଉଠି ଅଧଘଣ୍ଟା ପାଖିରେ ମୁଣ୍ଡ ଆଟିଏ ମାରନ୍ତି ….ଗାନ୍ଧି ଦେବତା—ଜଗନ୍ନାଥ କୁଆଡେ ଗଲେ…ଚଣ୍ଡୀ କୁଆଡେ ଗଲେ, ଗାନ୍ଧି ଅଧମ 'ଘର ଭର୍ତ୍ତି କରି ଦେଇ ହାରଲେଣି…ସିନ୍ଦୁରର ଦୁଆର ମୂର୍ତ୍ତିରେ ଆବିର୍ଭୂତ ହେଲେ କର୍ତ୍ତ୍ରୀ…. ବାଁ ହାତରେ ମହାତ୍ମା ଗାନ୍ଧିଙ୍କର ମୂର୍ତ୍ତି ଟି ଧରିଛନ୍ତି… ମୁହଁରେ ଏକ ଅତି କଠୋର ଭାବ….

ଧୂର୍ତ୍ତଭଲ ଗର୍ଜନ କରି କହିଲେ ଚୁପ୍ କର… ଜଗନ୍ନାଥ ନଇଲେ ତମ ଘରେ ଲକ୍ଷ୍ମୀଙ୍କ ଭଣ୍ଡାର ଆଣି ଭର୍ତ୍ତି କରି ଦେଇଛନ୍ତି—

ପିଲାମାନଙ୍କ ଆଡ଼େ କଠୋର ଦୃଷ୍ଟି ନିକ୍ଷେପ କରି ପଚାରିଲେ—

କହ, କଏ, ତମ ଭିତରୁ ଏ ଟାକବଲ ଭିତରେ ଗାନ୍ଧିଙ୍କୁ ଭର୍ତ୍ତି କରିଥିଲ, ଘର ବଦଳେଇଲା ଦେଲେ ?…

ସମସ୍ତେ ନୀରବ—ତଟସ୍ଥ…. ଘୁମାର ଦ୍ୱାର ଦେଶରେ ସ୍ୱୟଂ ବ୍ୟାଘ୍ର ଦେବତା …ଖସି ପଳେଇବାର ଉପାୟ ନାହିଁ ..

ଏପରିକ ଛଅବର୍ଷର ଶିଶୁ ସିପା—ଯିଏ କି ତାର କେଜେବାପାଙ୍କ ପିଠିରେ ବର୍ଷକ ଆଗରେ ଘୋଡ଼ାସବାର ହୋଇ ହସର ଉଚ୍ଛ୍ୱାସରେ ଘର କମ୍ପାଏ ସିଏ ବି ତାର ଚଳଚଞ୍ଚଳ ବଡ ବଡ ଆଖିରେ ଭୟ ଉକୁଟେଇ ତାଙ୍କ ଆଗରେ ଠିଆ ହେଇଚ ! ସେ ହୁଏତ ଭାବୁଚି— ଇଏ ତ ଆମର ଅତି ପ୍ରିୟ ଘୋଡ଼ା ନୁହେଁ ।

କାହାଠୁ କୌଣସି ଉତ୍ତର ନ ପାଇ ଗୃହକର୍ତ୍ତ୍ରୀ ଅଗ୍ନିଶର୍ମା ହୋଇଯାଇ

କହିଲେ —ନିହିବନି ତେବେ କାଏ ଏଇ କାଣ୍ଡ କରିଛ ? ନା, ମୁଁ ଜାଣିଛି ତମେ କେହି ନିଜର ଦୋଷ ସ୍ୱୀକାର କରିବନି —

•

କାର୍ଣ୍ଣା ପରିଷ୍କୃତ ଭାସିଗଲେ —ରାଜନୀତି ବିଜ୍ଞାନର ଶିକ୍ଷକର ପୁଅ, ତା ସ୍ତ୍ରୀ ଓକିଲ ପୁଅ ଏବଂ ତାର ସ୍ତ୍ରୀ, ଷଷ୍ଠବାର୍ଷିକ ସ୍ନାତକୋତ୍ତର ଶ୍ରେଣୀରେ ଇଂରାଜୀ ସାହିତ୍ୟ ପଢୁଥିବା ପୁଅ ମନସ୍ତତ୍ତ୍ୱ ଅନର୍ସ ନେଇ ବି. ଏ. ପରୀକ୍ଷା ଦେଇଥିବା ଝିଅ ଓ କେତେଟୁକୁଏ ସ୍କୁଲରେ ପଢୁଥିବା ନାତି ନାତୁଣୀ, ଏପରିକି ତିନିବର୍ଷର କଅଁଳ ଶିଶୁ ସିପା - ସମସ୍ତେ ତାଙ୍କ ଆଖିରେ ଯେପରି ଦେଖାଗଲେ ଯେଲେ ଛାତ୍ର ଛାତ୍ରୀ ଭଳି । ତାଙ୍କ ଅବଚେତନ ମନର ଅଧ୍ୟାପକ ହଠାତ୍ ଜାଗି ଉଠିଲେ ଅବସର ପ୍ରାପ୍ତିର ପାଞ୍ଚବର୍ଷ ପରେ···ସେ କହିବାକୁ ଆରମ୍ଭ କଲେ —

ମୁଁ ଜାଣେ ତମେ କେହି ଏ ଗର୍ହିତ ଦୋଷ ସ୍ୱୀକାର କରିବନି । କିନ୍ତୁ ଜାଣି ରଖ ତମେମାନେ ଯେଉଁ ମହାମାନବ ଗାନ୍ଧିଙ୍କୁ ଏତେ ଅବହେଳା ଦେଖେଇ ଆଜେ ବାଜେ ଜିନିଷ ଥିବା ଗାଦଲ ଭିତରକୁ ଫୋପାଡି ଦେଲ, ଯିଏ ତମର ଦୀର୍ଘ ଅଢ଼େଇଶହ ବର୍ଷର ପରାଧୀନତା ଶୃଙ୍ଖଳକୁ ଛିନ୍ନ କରି ତମକୁ ଆଣିଦେଲେ ସ୍ୱାଧୀନତା, ପୃଥିବୀର ମାନଚିତ୍ରରେ ଏକ ସାର୍ବଭୌମ ରାଷ୍ଟ୍ରଭାବରେ ଯିଏ ଭାରତକୁ ଚିହ୍ନେଇଦେଲେ ସେହି ମହାତ୍ମା, ତାଙ୍କର ଛାତ୍ରାବସ୍ଥାରେ ମିଥ୍ୟା କହିବା, ସିଗାରେଟ ଖାଇବା ଓ ଆତ୍ମହତ୍ୟା କରିବା ଚିନ୍ତାରୂପକ ପାପଭୁକ୍ତିକୁ ଅମ୍ଳାନ ବଦନରେ ନିଜ ପିତାଙ୍କ ନିକଟରେ ସ୍ୱୀକାର କରିଥିଲେ ।

ପାରିବାରିକ ଶ୍ରେଣୀ ଗୃହରୁ ପ୍ରଶ୍ନ ହେଲ···

କିନ୍ତୁ ସେଇ ମହାମାନବ ମହାତ୍ମା ଗାନ୍ଧିଙ୍କୁ ତ ଏ ଜାତି ମାରି ଦେଇଛି ।

ଆଖିବୁଜି ଗୁରୁଗମ୍ଭୀର ସ୍ୱରରେ ଅଧ୍ୟାପକ ଏ ପ୍ରଶ୍ନର ଉତ୍ତରରେ କହିଲେ ତୁମର ଧାରଣା ଭୁଲ । ସେ ମହାମାନବକୁ ଏ ଜାତି କେବେ ମାରିପାରେ ନା··· ତାଙ୍କୁ ମାରି ଦେଇଛନ୍ତି ଏଇ ରାଜନୀତିଜ୍ଞମାନେ— ତାଙ୍କର କଂଗ୍ରେସ ସହକର୍ମୀ ନେତାମାନେ, ଯେଉଁମାନେ ହେଲେ ଏ ଦେଶର କର୍ଣ୍ଣଧାର···ସ୍ୱାଧୀନତା ଆଗରୁ ଯେଉଁମାନେ ତାଙ୍କ ପାଦ ପାଖରେ ବସି ଅରଟରେ ସୂତା କାଟୁଥିଲେ ତାଙ୍କ ମୃତ୍ୟୁ ପରେ ସେଇମାନେ ତାଙ୍କୁ ସମାଲୋଚନା କଲେ । ଜାତିକୁ ପ୍ରଗତି ପଥରେ ଆଗେଇନବାରେ ତାଙ୍କର ଚିନ୍ତା, ତାଙ୍କର ସ୍ୱପ୍ନ ତାଙ୍କର ନୀତିକୁ ଗ୍ରହଣ ନ କରି

ଯେଉଁମାନେ ଗୁଳିକଲେ, ତାଙ୍କ ନାଜର ତନ୍ତ୍ରାଧାରକୁ ଜାତି ଉପରେ ଲଦି ଦେବାକୁ ସେଇମାନେ ତାଙ୍କୁ ହତ୍ୟା କରିଛନ୍ତି - ଯେଉଁମାନଂକ ଭିତରୁ ଅନେକେ ଏବେ 'କଂଗ୍ରେସ ଖୋଳ ଛାଡ଼ି 'ଅନ୍ୟ' ଖୋଳ ଭିତରେ ପଶିଯାଇଛନ୍ତି, ସେଇମାନେ - ଯେଉଁମାନେ କି କଂଗ୍ରେସ ନାଁରେ, ଗାନ୍ଧିଙ୍କ ନାଁରେ, ତାଂକ ମହାନ୍ ଆଦର୍ଶ ନାଁରେ କଂଗ୍ରେସକୁ ଭାଗ ଭାଗ କରି ଦେଇଛନ୍ତି ନିଜ ସ୍ୱାର୍ଥ ପାଇଁ, କ୍ଷମତାର ଲୋଭ ପାଇଁ-ଆଉ ସେଇ ଅଣ କଂଗ୍ରେସ ନେତାମାନେ ଯେଉଁମାନେ କି ଏବେ ଏକଜୁଟ ହୋଇ କଥା କଥାକେ ଗାନ୍ଧିଂକର ନୀତି ଓ ଆଦର୍ଶ ନାଁରେ ଶପଥ ନେଇ ଦେଶକୁ ଆଗେଇ ନବାର ସ୍ୱପ୍ନ ଭାରତର ଏ ବିରାଟ ଜନତା ଭିତରେ ବାଣ୍ଟି ଦେଉଛନ୍ତି··· ଅଥଚ ଅଣତିରିଶ ବର୍ଷ ତଳେ ଏ ଦେଶ ଯୋଉଠି ଥିଲା ଏବେ ·· ତାର ଢେର ତଳକୁ ଖସିଛି

ଦୁର୍ନୀତି, ଲୋକସଂଖ୍ୟା, ଗୁଣ୍ଡା ବିଶୃଙ୍ଖଳା, ଅରାଜକତା ଅନାଟନ ବଢ଼ିବଢ଼ି ଚାଲିଛି —ଅଧ୍ୟାପକ ହଠାତ୍ ଚହିଁଯାଇ ଆଖିଖୋଲି ଦୂର ଆଡ଼କୁ ଚାହିଁଲେ.... ଦେଖିଲେ ତାଂକ ସ୍ତ୍ରୋଣୀ ମୁହଁରେ ତାଂକର ତିନବର୍ଷର ଅତି ଆଦରର ନାତୁଣୀ ସିପା ଛଡ଼ା ଆଉ କେହି ନାହିଁ ତାଂକର ବକ୍ତୃତା ଶୁଣିବାକୁ ସେ ଦେଖିଲେ ସିପା ଏକ ବାଧ୍ୟ ଛାତ୍ରୀ ଭଳି ତାଂକରି ଆଡ଼େ ଚାହିଁଛି ସତେ ଯେମିତି ତାର ଅତି ଅପରିପକ୍ୱ ମନ ହଠାତ୍ ପରିପକ୍ୱତା ଲାଭ କରିଛି । ତାଂକ ବକ୍ତୃତାର ତାତ୍ପର୍ଯ୍ୟ ବୁଝିପାରିଲା ଭଳି ଆଖି କରି ସେ ତାଂକ ଆଡ଼େ ଚାହିଁଛି -

ଗୃହକର୍ତ୍ତ୍ରୀଙ୍କର ସମ୍ବିତ୍ ଫେରି ଆସିଲା······

ସେ ରୂଢ଼ ସ୍ୱରରେ ସିପାକୁ ଚାହିଁ କହିଲେ—

ଯା, କାହିଁକି ଏଠି ଠିଆ ହୋଇଚୁ

ସମସ୍ତେତ ଗଲେଣି... ତୋ ବୋପା, ତୋ ମା'... ଆଉ ମୁଁ ତୋର ଘୋଡ଼ା ହେଇ ପାରିବିନି—ଯା,

ସିପା ଭୟଭୀତ ଆଖିରେ ତାର ଅତିପ୍ରିୟ ଜେଜେବାପା—ଘୋଡ଼ାକୁ ଚାହିଁ ଚାହିଁ ଘରୁ ବାହାରିଲା —

ତାଙ୍କର ଶୟନ କକ୍ଷରେ ଏକାନ୍ତ ଏକା ଓ ଅସହାୟ ଭାବରେ ଠିଆ ହୋଇ ରହି ଗୃହକର୍ତ୍ତ୍ରୀ ବାଁ ହାତରେ ଧରିଥିବା ଗାନ୍ଧି ମୂର୍ତ୍ତିଟିକୁ ଆଖି ଆଗରେ

ଧରି ରଖି ଅତି ବିସ୍ମୟ ଦୃଷ୍ଟିରେ ନେଇଁଅନ୍ତକୁ ଚାହିଁ ରହିଲେ। ମନେହେଲା ସେ ଦୃଷ୍ଟି ଯେପରି ତାଙ୍କର ଅତୀତର ମୁହୂର୍ତ୍ତକୁ ଆଲୋଡ଼ନ କରୁଛି—ହଠାତ୍ ତାଙ୍କର କିଛି ଗୋଟାଏ କଥା ମନେ ପଡ଼ିଗଲା ଭଳି ଜଣାଗଲା—ତାଙ୍କ ଗୃହିଣୀ ଓ ଭଙ୍ଗୀରୁ। ସେ ଘରର ଚଟାଣ ଉପରେ ଆଣ୍ଠୁମାଡ଼ି ବସିପଡ଼ି ଦୁଇହାତରେ ଗାନ୍ଧି ମୂର୍ତ୍ତିଟିକୁ ଆଖି ଆଗରେ ଟେକି ଧରି ଅଶ୍ରୁ ଗଦ ଗଦ କଣ୍ଠରେ କହିଲେ

•

ହେ ମହାମାନବ, ମତେ କ୍ଷମା କର......ମତେ କ୍ଷମା କର, ମୁଁ ହିଁ ଅଧମ ତୁମର ଏ ଅବହେଳିତ ଅବସ୍ଥା ପାଇଁ ଦାୟୀ·· ଆଉ କେହି ନୁହେଁ···ମୁଁ ମୁଁ, ମୁଁ ·· ଘର ବଦଳେଇଲା ଦିନ ତମର ମୂର୍ତ୍ତିଟିକୁ ମୁଁ ମୋ ସୁଟ୍‌କେଶ୍ ଭିତରେ ରଖିବାକୁ ଯାଉଥିଲି ... ହଠାତ୍ ମୋର ସ୍ତ୍ରୀଙ୍କ ଚିତ୍କାର ଶୁଭିଲା—ଶୀଘ୍ର ଡାବଲ ପ୍ୟାକିଂ କରି କଣ୍ଟା ବାଡ଼ାଅ ଟ୍ରକରେ ଉଠିବ, ଘଣ୍ଟାକେ ପନ୍ଦରକେ ଜିନିଷ ଲୋଡ୍ କଲେ ମିଳ ଦାର ବାଜି ଯିବ—

ବର୍ଷୀୟସୀ ଓ ଯୋଗ୍ୟ ଅଯୋଗ୍ୟ ମିଶେଇ ଗୃହ-ପୁତ୍ର-ସନ୍ତାନ-ଗର୍ବିତା ଗୃହିଣୀଙ୍କର କଣ୍ଠ ସ୍ୱର ରୂଢ଼ କମ୍ପନରେ ମୁଁ ସମ୍ପୂର୍ଣ୍ଣ ବିବ୍ରତ ଓ ଅନ୍ୟମନସ୍କ ହୋଇ ପଡ଼ିଲି। ମୋର ମନେ ପଡ଼ୁଛି—ମୁଁ ଜାଣିନି ତମ ମୂର୍ତ୍ତିଟିକୁ କେତେବେଳେ ଡାବଲ ଭିତରେ ମୁଁ ରଖିଦେଇ ତାର ଫାଙ୍କ ଶିରେ କଣ୍ଟା ପିଟି ଦେଇଛି ... ହେ ମହାତ୍ମା। ତମେ ମତେ କ୍ଷମା କର···ମୁଁ ତମର ଭଣ୍ଡ ଭକ୍ତ ନୁହେଁ ତମ ପ୍ରକୃତ ଭକ୍ତମି, ଶଠତା କରିବାକୁ ମୁଁ ସୁଯୋଗ ପାଇଲି କେଉଁଠୁ? ମୁଁ ଖଦଡ଼ ପିନ୍ଧିଛି—ତମ ଉଦ୍‌ଭାବିତ ପବିତ୍ରତାର ପ୍ରତୀକ ଟୋପି ପିନ୍ଧିଛି ··· ସେଇ ପୋଷାକ ପିନ୍ଧି ଆଜିର ବହୁ ଶଠ ନେତାଙ୍କ ଭଳି ରାଜ୍ୟ ବା ଦେଶର କ୍ଷମତା ଗାଦିରେ ବସିଥିଲେ ମୁଁ କଅଣ ହୋଇଥାନ୍ତି କହି ପାରିବିନି—ହୁଏତ ତମେ ନାଁ ଭଙ୍ଗେଇ ଦୁର୍ନୀତି କରିଥାନ୍ତି...ହୁଏତ କରି ନ ଥାନ୍ତି-କାରଣ ମୋ ରକ୍ତରେ ମୋର ପୂର୍ବପୁରୁଷଙ୍କର ସଚ୍ଚୋଟ ପଣିଆ ପ୍ରବାହିତ—ଅଧ୍ୟାପକ ଭାବରେ ସେମିତି କିଛି ଦୁର୍ନୀତି କଲି ଭଳି ମୋର ମନେ ପଡ଼ୁନି କିନ୍ତୁ ମୋର ଛୁଆବସ୍ଥାରେ ମୁଁ ତମର ଆହ୍ୱାନରେ କୁଜଙ୍ଗ ଲବଣ ସତ୍ୟାଗ୍ରହରେ ବାନର ସେନା ଭାବରେ ଯୋଗ ଦେଇଥିଲି ପାଞ୍ଚ ପାଞ୍ଚ ଥର ଲୁଣମିଶା ମାଟି ମୁଠେଇ ଧରିଥିଲି·· କିନ୍ତୁ ପାଞ୍ଚ ଥର ଯାକ ମତେ ପୁଲିସ୍‌ବାଲା ଶୂନ୍ୟେ ଶୂନ୍ୟେ ଟେକି ନେଇ ଶହେ ଗଜ ଦୂରରେ ବସେଇ ଦେଇ ଯାଇଛନ୍ତି—ଶେଷ ଥରକ ଯେତେବେଳେ ମୁଁ ଦୌଡ଼ିଯାଇ ଦୁଇହାତରେ ଦୁମୁଠା ଲୁଣମାଟି

କାବୁଡ଼ି ଧରି ମାଟି ଉପରେ ପେଟେଇ ଶୋଇ ପଡ଼ିଲି, ଇଂରେଜ ସରକାରଂକର ଜଣେ କୁତ୍ସିତ ପୁଲିସ୍ ସବ୍-ଇନ୍‌ସ୍‌ପେକ୍ଟର ମୋ ପାଖକୁ ଦୌଡ଼ି ଆସି କହିଥିଲେ —

ଆରେ ବେମେଡ଼ ଲଙ୍କବଡ଼ିଆ ଟୋକାଟା ବଡ଼ ପାଜି ଅଛି.......

ଏତିକି କହି ସେ ମୋ ଦୁ'ହାତ ମୁଠାର ଗଣ୍ଠି ଗୁଡ଼ାକୁ ତାଂକ ବ୍ୟାଟନ୍‌ରେ ଛେଚି ପକେଇ ଥିଲେ...ମାସେ ଯାଏଁ ମୋ ଗଣ୍ଠିଫୁଲା ଆଉ ଦରଜ କମି ନଥିଲା · ୧୯୩୦ ମାର୍ଚ୍ଚରେ ତମେ ଯେତେବେଳେ ଜେଲ୍ ଗଲ ମୁଁ ଦଶମ ଶ୍ରେଣୀର ଛାତ୍ର ଥିଲି—'ବାପୁଜୀ · ତମର ହସି ହସି କାରାବରଣ ସମ୍ବାଦ ପାଇଲା ମାତ୍ରେ ମୁଁ ମୋର କେତେଜଣ ବନ୍ଧୁଙ୍କ ସହିତ ଜଣେ କୁନି ନେତା ସାଜି ସ୍କୁଲର ବିଭିନ୍ନ ଶ୍ରେଣୀରୁ ଛାତ୍ରମାନଙ୍କୁ ବାହାର କରି ଆଣିଲି 'ମହାତ୍ମା ଗାନ୍ଧିକି ଜୟ' ଧ୍ୱନି ଦେଇ ..ସାରା କଟକ ଆମ ସ୍କୁଲର ଛାତ୍ରମାନଙ୍କ ସହିତ ଧ୍ୱନି ଦେଇ ପରିକ୍ରମା କରି ସ୍କୁଲକୁ ଫେରିଲା ପରେ ନୋଟିସ୍ ବୋର୍ଡରେ ଦେଖିଥିଲି ମୁଁ ଓ ମୋର କୁନି ନେତାଙ୍କ ନାଁ ସ୍କୁଲରୁ କାଟି ଦିଆ ହୋଇଛି...ସ୍କୁଲର ଅତି ପ୍ରତାପଶାଳୀ ଓ ମୋର ଆତ୍ମୀୟ ସ୍ୱର୍ଗତ ହେଡ଼ ପଣ୍ଡିତଙ୍କ ହାତରୁ ଗୋଟିଏ ଦଶଟେସିଆ ଗୃପୁଡ଼ା ଖାଇ ସାରି ହେଡ ମାଷ୍ଟରଙ୍କଠାରୁ କ୍ଷମା ମାଗି ତାଙ୍କ ଆଦେଶ ସୁନା ପିଲଟେ ଭଳି ଯାଇ କ୍ଲାସରେ ବସିଛି...ହେଲେ ସେ ଗୃପୁଡ଼ାର ପ୍ରକୋପ ଏବେବି ମୋ ମନରୁ ଲିଭି ନାହିଁ—ଯେଉଁମାନେ କ୍ଷମା ନ ମାଗିଲେ ସେମାନେ ଦଶମ ଶ୍ରେଣୀରୁ ପାଠ ଛାଡ଼ି, ଜେଲ ଯାଇ ଦେଶର ବଡ଼ ବଡ଼ ନେତା ହେଲେ...କେତେ କଅଣ କଲେ...ଆପଣଙ୍କ ଆଶୀର୍ବାଦରୁ କିନ୍ତୁ ମୁଁ ସାରା-ଜୀବନ ଗୋଟିଏ ଶିକ୍ଷକ ହୋଇ ରହିଗଲି....ଇଂରେଜ ସରକାର ଅମଳରୁ ଆଜିଯାଏ ବି ପ୍ରଚଳିତ ଗୋଟାଏ ଷ୍ଟାଣ୍ଡ ଗୋଲାମ ତିଆରି କରିବା ଶିକ୍ଷା ପଦ୍ଧତିର ଶିକ୍ଷକ ଭାବରେ ଗୁଳିଗ୍ରା କରି ଜୀବନଟାକୁ ବ୍ୟର୍ଥ କରିଦେଲି...କିନ୍ତୁ ହେ ଜାତିର ପିତା ! ତୁମକୁ ମୁଁ ଗଭୀର ଭକ୍ତି କରିବି....ମତେ ମନ୍ତ୍ରୀ କରେଇ ଦେଇ ପାରିଲନି ବୋଲି ମୁଁ ତୁମକୁ ମୋର ଅନ୍ତରରୁ କୃତଜ୍ଞତା ଜଣେଇଛି....ତା' ହୋଇଥିଲେ କୋଉଦିନ କେଉଁ କମିସନ୍ ବସି ମୋର ଦୁର୍ନୀତି ପାଇଁ ମତେ ଜେଲରେ ପୂରେଇ ଦେଇଥାନ୍ତା....''

କର୍ତ୍ତାଂକର ଏଇ ମର୍ମାନ୍ତକ ଅନୁଶୋଚନାର ବାଣୀ କୋଠଘରର ଦ୍ୱାର ଦେଶରେ ଶୁଣୁଥିଲେ ଗୃହକର୍ତ୍ତ୍ରୀ ।

ହେ ପରମ ପିତା...ମୋର ପତ୍ନୀ ଆଜ ଯେଉଁ ଅବଜ୍ଞା ସୂଚକ ବାକ୍ୟ ପ୍ରୟୋଗ କଲେ ତମ ପ୍ରତି, ସେଥିପାଇଁ ତାଙ୍କୁ କ୍ଷମାକର । ସେ ଜାଣିଶୁଣି ଏକଥା କହି ନାହାନ୍ତି କାରଣ ସେ ତୁମକୁ ପ୍ରକୃତରେ ତାଙ୍କର ଅନ୍ତର ଭିତରେ ଭକ୍ତି କରନ୍ତି । ସେ ଉଚ୍ଚ ଶିକ୍ଷିତା··ହୃଦୟବତୀ ସେଇତ ଥରେ ପୁରୀରୁ ତମର ଏଇ ସୁନ୍ଦର ଖଡ଼ି ମୂର୍ତ୍ତିଟି ଆଣି ମତେ ଉପହାର ଦେଇଥିଲେ । ଆମର ବିବାହ ପୂର୍ବରୁ ଯେତେବେଳେ ସେ ମୋର ପ୍ରଣୟିନୀ ଥିଲେ···ଆଜ ସିନା ହିଂସ୍ର ଆହତ ବ୍ୟାଘ୍ରୀ ଭଳି ଗର୍ଜନ କରୁଛନ୍ତି ଯାଉଣ୍ଡି ଅସୁନ୍ଦି···କିନ୍ତୁ ତମେତ ସର୍ବବ୍ୟାପୀ··· ତମେ ନିଶ୍ଚୟ ତାଙ୍କର କୋକିଳ କଣ୍ଠରେ ମୋ ପ୍ରତି ତାଙ୍କର ପ୍ରଣୟ ନିବେଦନର ଭାଷା ଶୁଣିଥିବ.... ଆଉ ଶୁଣିଥିବ ଯେତେବେଳେ ସେ ପୂର୍ବରୁ ଫେରି ତାଙ୍କର ହସ ହସ ସୁନ୍ଦର ମୁହଁରେ ମୋ ଆଡ଼କୁ ଚାହିଁ ପଚାରିଥିଲେ, କହିଲ ମୁଁ ତମ ପାଇଁ କ ପ୍ରେଜେଣ୍ଟ ଆଣିଚି....ମୁଁ କହି ପାରିଲିନି ସେ କହିଲେ···ଆଖିବୁଜ । ମୁଁ ଆଖି ବୁଜିଲି .. ଯେତେବେଳେ କହିଲେ ଆଖି ଖୋଲ ମୁଁ ଆଖି ଖୋଲି କଅଣ ଦେଖିଲି ?···ତମର ଏଇ ସୁନ୍ଦର ସୌମ୍ୟ ଖଡ଼ିର ମୂର୍ତ୍ତିଟି । ଆନନ୍ଦରେ ଅଧୀର ହୋଇଯାଇ ମୁଁ ମୋର ସେଦିନର ଭାବୀ ପତ୍ନୀଙ୍କ ଲାଜ ଭରା ନାଲି ଟୁକୁଟୁକୁ ଓଠରେ ଗୋଟିଏ ମଧୁର ଚୁମ୍ବନ ଆଙ୍କି ଦେଇ କହିଲି—ସୁରେଖା ମୋତେ ଆଜି ମୋ ଜୀବନର ଶ୍ରେଷ୍ଠ ଉପହାର ଦେଇଚ, ଏଇ ଉପହାରରୁ ମୋ ପ୍ରତି ତମର ଗଭୀର ପ୍ରେମର ପରାକାଷ୍ଠା ସୁସ୍ପଷ୍ଟ···

•

ସେଇ ସୁରେଖା କିନ୍ତୁ ଆଜି ସଂପୂର୍ଣ୍ଣ ଡିସ୍ଇଲ୍ୟୁଜାନ୍ଡ଼....ଭ୍ରାନ୍ତ ବିମୁକ୍ତ ଓ ଅଭାବ ଅନାଟନର କଡ଼ାଘାତରେ ସେ ଦୁଇଟା ପୁଅ ଓ ଗୋଟିଏ ଝିଅକୁ କପରି ଯୋଗ୍ୟ କରିବେ ସେଇ ଚିନ୍ତାରେ ସେ ତାଙ୍କର ସୂକ୍ଷ୍ମ ଆତ୍ମାକୁ ନଷ୍ଟ କରିଦେଇଛନ୍ତି । ସ୍ୱାଧୀନତାର ଦୀର୍ଘ ଅଣତିରିଶ ବର୍ଷପରେ ଯଦି ତାଙ୍କର ଏଇ ପଞ୍ଚାବନ ବର୍ଷ ବୟସରେ ସେ ପ୍ରତି ଦୋକାନ ସାମନାରେ କ୍ୟୁରେ ଛିଡ଼ା ହୋଇ ରହିବେ ଘଣ୍ଟା ଘଣ୍ଟା ଧରି ଖରା ବର୍ଷା ଆଉ ଶୀତରେ, ତେବେ ତାଙ୍କ ମୁଣ୍ଡ ଠିକ୍ ରହିବ କମିତି ?

ତାଙ୍କୁ ତମେ କ୍ଷମା କରହେ ମହାତ୍ମା···

•

ସୁରେଖା ଦେବୀଙ୍କ କଠୋର ମୁଁହଟା ହଠାତ୍ ନରମ ହୋଇ ଆସିଲା.... ଆଖି ଛଳଛଳ ହୋଇ ଆସିଲା, ସୁଦୂର ଅତୀତରେ ଗୁଡ଼ି ଆସିଥିବା ତାଙ୍କର ପ୍ରଣୟ

ଭବୋଚ୍ଛ୍ୱାସ ନାରୀ ସୁଲଭ କୋମଳତାର ସ୍ପନ୍ଦନରେ ଧୀରେ ଧୀରେ ସେ ଆସିଲେ ସ୍ୱାମୀଙ୍କ ପାଖକୁ —ଅତି ଧୀରେ, ଅତି କୋମଳତା ମିଶେଇ ସେ ଗାନ୍ଧିଙ୍କ ମୂର୍ତ୍ତିଟି ସ୍ୱାମୀଙ୍କ ଶିଥିଳ ହାତରୁ ନେଇ ନିଜ ଦାମିକା ମଠା ପଣତ କାନରେ ଅତି ଆଦରଟରେ ପୋଛି ଦେଇ ରେଡ଼ିଓ ଉପରେ ରଖିଦେଲେ···

ବିସ୍ମୟ ବିସ୍ଫାରିତ ନେତ୍ରରେ କର୍ତ୍ତା ସୁରେଖା ଦେବୀଙ୍କର ଏଇ ଧୈର୍ଯ୍ୟନୁ କର୍ମଟିକୁ ଗୃହିଣୀ ଦେଖୁଥିଲେ... ଅଶ୍ରୁଳମିଶା କୋମଳ କଣ୍ଠରେ । ସୁରେଖା ଦେବୀ କହିଲେ—ଏଇ ହତଭାଗ୍ୟ ମହାମାନବମାନେ ବୁଦ୍ଧ, ଗାନ୍ଧି ଏ ଦେଶରେ ଜନ୍ମ ନେଲେ ସିନା···ହେଲେ ସେମାନେ ଭକ୍ତ ଆଦର ପାଇଲେ ଏ ଦେଶର ବାହାରେ—

ବୃଦ୍ଧ ଅଧ୍ୟାପକଙ୍କ ଆଖି ଝଲସି ଉଠିଲା···ପ୍ରଶଂସାରେ....ସୁରେଖା ଦେବୀଙ୍କ ପ୍ରତି ।



# ଓଭନ ଉପରେ ଝରକ୍ରେଜନର ଛାଇ

ଅଞ୍ଜଳି ପାଢ଼ୀ

ଦୁଧ ଉତୁରି ଯାଉଛି···ନୀଳିମା ତରତର ହୋଇ ରୋଷେଇଘରକୁ ପଶି ଆସିଲା। ଆଗ ଦୁଧ ଡେକଚିଟା ଓହ୍ଲାଇବ ନା ଗ୍ୟାସଚୁଲି ଅଫ୍ କରିବ, ତାକୁ ବୁଦ୍ଧି ବାଟ ଦିଶିଲା ନାହିଁ। ଏତିକିବେଳେ 'ହୁଁ···ହୁଁ···' କହି ଦାମନନା ରୋଷେଇଘର ଭିତରକୁ ପଶି ଆସି ଗ୍ୟାସ ଚୁଲିଟା ଲିଭାଇ ଦେଲା। ତାକୁ ଦେଖି କହିଲା ଅନେଇଛ କ'ଣ ହେ ନାନୀ? ମା ଆଇଲେ ରଖିବେ ଯେ···!

ନୀଳିମା ଚମକି ପଡ଼ିଲା। ସେ ଜାଣେ, ଝିଅଟି ପରି ବାପ୍ନା ଶୁଦ୍ଧି ବୋଉ ଅସଲ କଥା ଠାଉରାଇ ନେବ। ତା ପୂର୍ବରୁ ବ୍ୟବସ୍ଥା କରିବାକୁ ପଡ଼ିବ! ତଥାପି ବି ଚୁଲି ଉପରେ ଦୁଧ ଉତୁରି ପଡ଼ିଛି। ଡେକଚିର ଗୋଟେ ପାଖରେ ଦୁଧ ଲାଗିଛି। ନୀଳିମା ଓଦା କନା ଆଣି ଡେକଚି ଚାରିପାଖ ଭଲ ଭାବରେ ପୋଛି ଦେଇ ଜାଲି ଆଲମାରିରେ ନେଇ ରଖିଦେଲା। ତା' ପରେ ଚୁଲିଟା ଭଲଭାବେ ପୋଛି ଦେଇ ବାହାରି ଆସିଲାବେଳେ ଦାମନନା ପଚାରିଲା : କିଏ ଫୋନ୍ କରିଥିଲା କି ନାନୀ? ନୀଳିମା ମୁହଁରେ ମେଞ୍ଚାଏ ଅନ୍ଧାର କିଏ ଗୁନ୍ଥି ଦେଲା। କଥାଟା ଗୋଲେଇ ନେଇ ସେ କହିଲା ତୁ ଜାଣିନୁ :

ଜାଣିନି କ'ଣ ନା ! ତମର ସେଇ ସାଙ୍ଗ ପାରଥ ଦାଦା ହେଇ ଥିବେ। ହେଇଥିପାଇଁ ଦୁଧ ବଳାଇ ଗଲାବି ସେ କେତେବେଳେ ଉତୁରିଗଲାଣି ଜାଣି ପାରୁ ନ !

ନୀଳିମା କିଛି କହିଲା ନା। ହାତ ଧୋଇ ଚୁପ୍ ଚାପ୍ ଶୋଇବା ଘରକୁ ଚାଲିଆସିଲା। ଆଲମାରି ଖୋଲି ସେ ହ୍ୟାଙ୍ଗରରେ ଝୁଲୁଥିବା ଶାଢ଼ୀଗୁଡ଼ିକୁ ଅନାଇଲା। କେଉଁ ଶାଢ଼ୀଟା ସେ ପିନ୍ଧିବ? କେଉଁ ଶାଢ଼ୀଟା ପିନ୍ଧିଲେ··· ଦାଣ୍ଡଗେଟ୍ ଖୋଲିବାର ଶବ୍ଦ ଶୁଭୁଛି। କିଏ ଆସିଲା ଏ ଝରାବେଳକାରେ? ସେ ପଛକୁ ମୁହଁ ବୁଲାଇ ଚାହିଁଦେଲା ଓ ତା' ପାଟିରୁ ଉଚ୍ଚାରିତ ହୋଇଗଲା: ଆରେ ବାକୁନା ତମେ।

: ଖୁଡ଼ି ନାହାନ୍ତି ?
: ବୋଉ ନାହିଁ । ବଣିଆ ପାଖକୁ ଯାଇଛି ।

ତୁ କୁଆଡ଼େ ବାହାରିଚୁକି ? ବନ୍ଦନା ପଚାରିବେଇ ଅପେକ୍ଷା ବି କଲା ନାହିଁ ତା'ର ଉତ୍ତରକୁ । କହିଲା : ମୁଁ ରାଉରକେଲା ଯାଉଛି । ଟୁଲୁ ପାଇଁ ଖୁଡ଼ି କ'ଣ ପଠେଇବେ ବୋଲି କହୁଥିଲେ । ମୁଁ ନେଇଯାନ୍ତି ।

ନୀଳିମା କଣ କହିବ କହିବ ହୋଇ ଅଟକିଗଲା । ବନ୍ଦନା ପୁଣି କହିଲା, ମୁଁ ଘଣ୍ଟାଏ ଭିତରେ ଆସୁଛି । ତୁ ଜିନିଷ ସଜାଡ଼ି କରି ରଖିଥା...

ଟୁଲୁ ଏ ବର୍ଷ ଇଞ୍ଜିନିୟରିଂ କଲେଜରେ ଭର୍ତ୍ତି ହୋଇଛି । ହଷ୍ଟେଲରେ ରହି ପାରୁନି ମାତ୍ର କେତେଟା ମାସ ହୋଇଛି । ସବୁବେଳେ ଚିଠି ଲେଖୁଛି, 'କିଏ ଆସ, ନ ହେଲେ ମୋ ପାଇଁ କ'ଣ ଜିନିଷ ପଠାଅ ।'' ଧାନ ଧୁଅଡ଼, ବୋଉର ଭାରି ଗେହ୍ଲା । ନୀଳିମା ଟୁବିଲୁ ଓ ମାନକୁ ମନ କହି ପକାଇଲା, ଗେହ୍ଲା ନା ଖମ୍ବ ଅଳୁ !

ଏଇନା ସମସ୍ତଙ୍କର ଯିବାକୁ ଥିଲା ! ବୋଉର ଆଜି କି ଦରକାର ଥିଲା ବଣିଆ ପାଖକୁ ଯିବା ? ଓଲଟି କହିଲା ବୋଉ : ଆଜି ଦିନ କହିଛି ଲୋ....

ହଁ, ଭବନା ! ଯିଏ ଗଲା ମଙ୍ଗଳବାର ବି ଦିନ କହିଥିଲା । ନୀଳିମା ଜାଣିଗଲାଣି ବଣିଆ, ଦର୍ଜି, ଧୋବାଙ୍କର କଥାରେ କିଛି ଠିକ୍ ନ ଥାଏ । ନାନୀ ବାହାଘରର ଦୁ'ବର୍ଷ ପୂର୍ବରୁ ବୋଉ ଗହଣା ତିଆରି କରୁଥିଲା । ତଥାପି ସବୁ ଗହଣା ତିଆରି ନ ହୋଇ ପାରିବାରୁ ବୋଉର ସୁନା ହାତ ପିନ୍ଧି ନାନୀ ଶାଶୂ ଘରକୁ ଗଲା । କିନ୍ତୁ ବୋଉର ମୁକ୍ତି ଏମିତି ଦଶଥର ନ ଗଲେ ସେ କାମ ଆରମ୍ଭ କରିବନି । ତା କଥା ଶୁଣି ନୀଳିମା ରାଗରେ କହିଥିଲା ହଉ, ତୁ ତୋର ଯାଉଥା । କହି ଦେଉଛି, ମୋର ଗହଣା ଦରକାର ନାହିଁ । ତୁ ଅଯଥାରେ ଗହଣା କରିବାରେ ଲାଗିଛୁ । ଧାନ ବ୍ରେଦାନ୍ତ ବ୍ରେଦାନ୍ତ ବୋଉ କହିଲା, ଦେଖିବ ନା କି ? ତୁ କେମିତି ନ ନେଇ ଯିବୁ !

ବୋଉ ଯିବାର ଅଧଘଣ୍ଟା ହେଲାଣି । କେଜାଣି କେତେବେଳକୁ ଫେରିବ । ବନ୍ଦନା କେଉଁ ବସ୍‌ରେ ଯିବ କି ? କିଛି କହିଲା ନାଇ ତ । ନୀଳିମା ବାମନନାକୁ ଡାକିଲା ଓ କହିଦେଲା, ଟୁଲୁ ପାଇଁ ଗଜା ତିଆରି ହେବ ।

ଏତେ କମ୍ ସମୟ ଭିତରେ ଆଉ କଣ କରାଯାଇ ପାରେ—ସେଇ କଥା ସେ ଚିନ୍ତା କରୁଥିଲା । ବୋଉ ଫେରିଲେ ଯଦି ଶୁଣିବ, ଟୁଲୁ ପାଇଁ କିଛି ପଠା ଯାଇ ନି, ତେବେ ଘରେ ମହାପ୍ରଳୟ ଜାଣ ବସିବ ଓ କହିବ: ଏତେ ବଡ଼ ଝିଅ ହେଲାଣି, ବୁଦ୍ଧି ଶୁଦ୍ଧି କିଛି ହେଲାନି ! ବିବିଧ ଭାରତୀରୁ 'ରଙ୍ଗମଞ୍ଚ' ପ୍ରୋଗ୍ରାମ ଶେଷ ହେଲା ନା । ବଜୁନା ଘଣ୍ଟାଏ ଭିତରେ ଫେରିବ କହିଛି । ବଜୁନା ମର୍ଟିରେ ଆସି ପହଞ୍ଚି ଯାଇ ନ ଥିଲେ ସେ ଏତେବେଳକୁ ଶାଢ଼ୀଟା ପାଲଟି ନେଇ ଟିକିଏ ରିଫ୍ରେସ୍ ହୋଇ ବାହାରି ଚାଲି ଯାଇଥାନ୍ତା । କେତୋଟି ମୁହୂର୍ତ୍ତର ଓଲଟପାଲଟ । ଏତେବେଳକୁ ସେ ପହଞ୍ଚି ସାରନ୍ତିଣି । ଯାଃ .. କିଛି ନ ଭାବିଲେ ବରଂ ଭଲ ।

ଫ୍ରିଜରୁ ସେ ଅଣ୍ଡା କାଢ଼ିଲା । ମଇଦା, ମାର୍ଗାରିନ୍ ବେକିଂ ପାଉଡ଼ର ଡବାରୁ କାଢ଼ିଲା । ଘଣ୍ଟାକ ଭିତରେ ହୋଇଯିବ । ତା'ପରେ ସେ ଚାଲିଯାଇ ପାରିବ । ଚିନ୍ତା କ'ଣ ? ତା ମୁହଁରେ ଆନନ୍ଦର ପାତଳ ରେଖାଟିଏ ଉଙ୍କି ଉଠିଲା । ସେ ଭୁଲି ଯିବାକୁ ଇଚ୍ଛା କରୁଥିଲା ନିଜକୁ ଓ ନିଜର ସ୍ମୃତିକୁ ।

: କେଦାର ଗୌଷ୍ଠ

: ନା

: ରାଜରାଣୀ ମନ୍ଦିର

: ତେବେ—ଆଉ ସେଇ ପୁରୁଣା ଜାଗା

: ଆଉ କେଉଁଠିକୁ ?

: ତୁମେ ଆସ, ମୁଁ ଏକ ନିକଟରେ ଅଛି । ଆସିଲେ କହିବି

: ଚମକାଇ ଦେବ ?

: ଯାହା ଭାବୁଛ

ସେ ଟେଲିଫୋନ୍ ରଖିଥିଲା । ମଧୁର ଏକ କଳ୍ପନାରେ ରୋମାଞ୍ଚିତ ହୋଇ ହୋଠିଥିଲା ତା'ର ମନ । ହାଲ୍‌କା ହାଲ୍‌କା ସେ ଅନୁଭୂତ । ସବୁଜ

ଧାନ କିଆରୀଙ୍କୁ ମୃଦୁପବନ ରହି ରହି ଛୁଇଁ ଯାଉଛି ହତେ କି ! ବେଳେବେଳେ କିଛି ନ ହେବା ପାଇଁ ଠିକ୍ କରିଥିଲେ ବି କେତେବେଳେ କେଉଁ ଫାଙ୍କରେ ସ୍ୱପ୍ନ ହଳ ଫୁଟି ଉଠନ୍ତି ତା ଆଖିରେ । ଅଡ଼େଇ ଦେବାକୁ ଯାଇ ହାତ ବଢ଼େଇ ହୁଏ ନାହିଁ, ବରଂ ନେସି ହୋଇଯାଏ ଆଖିର ପତାରେ ସ୍ୱପ୍ନର ରଙ୍ଗ ହଳୁ । ନୀଳିମା ସ୍ୱପ୍ନର ବାସ୍ତବତା ସମ୍ପର୍କରେ ଚିନ୍ତା କରିପାରେ ନାହିଁ । ତାକୁ ଡର ମାଡ଼େ । ମଣିଷ କେତେ ମୂର୍ଖ ହୁଏରେ ! ମଧୁର ଉନ୍ମାଦନାରେ ହଜି ଯିବାକୁ ସବୁବେଳେ କାମନା କରେ, ଅଥଚ ସେ ଜାଣେ ଯେ ଏହା କ୍ଷଣିକ !

ନୀଳିମାର ଭାବନା ଅଧା ରହିଗଲା । ଦାମ ନନା ପଚାରୁଛି : ମିଠା ଗଜା କି ହେ ନାନୀ ? ନୀଳିମା ଚମକି ଉଠିଲା : କହିଲି ପରା, ଥରେ !

: ନାହିଁ ଯେ, ଟୁଲୁବାବୁ ଲୁଣି ଭଲ ପାଆନ୍ତି । ମାଉସୀଆ ନନା ଦାନ୍ତ ନେଫଡୁଛି । ନୀଳିମା ରାଗିଗଲା : ମତେ ପଚାରୁଛ କାହିଁ ? ଯାହା ଖୁସି କର ।

ଦାମନନା ଗଲାଣି । ସେ ଏଣିକି ଅଣ୍ଡା ଫେଣ୍ଟାରେ ମନ ଦେଲା । ଚର୍ବିରଟା ଖରାପ ହୋଇଯାଇଛି । ପଡ଼ୋଶୀଘରୁ ମାଗିଥିଲେ ହୋଇଥାନ୍ତା । ଚାମଚରେ ଫେଣ୍ଟି ହାତ କାଟିଲାଣି । ସସ୍ପେନ୍ସ ଗୋଲେଇ ଓଭନ୍ କାଢିବାକୁ ଗଲାବେଳେ ତା'ର ମନେ ପଡ଼ିଲା, ସେ ଏସେନ୍ସ ଦେଇନି । କେଉଁଠି ରହିଲା ଶିଶିଟା ? ଚାରିଆଡ଼ ଖୋଜି ପକାଇଲା ନୀଳିମା ।

: ହେ ନନା, ଏସେନ୍ସ ଶିଶି କିଏ ନେଲା ?

: ମୁଁ ଜାଣିନି, ମା କାହାକୁ ଦେଇଥିବେ ।

: ତୁମେ ଘରେ ଅଛ ନା ନାହିଁ ? ଏସେନ୍ସ କିଣା ହେଇଛି କ'ଣ ସାଇ-ପଡ଼ିଶା ବାଣ୍ଟିବାକୁ ?

ଓ୍ୱାଲକ୍ଲକ୍‌ରେ ବାଜିଲା ଢନ ଢନଟା । ନୀଳିମା ଚମକି ପଡ଼ିଲା । ଡେରି ହୋଇଯାଉଛି । ତରତରରେ ସ୍ଲିପରଟା ଗଳେଇ ଦେଇ ପଡ଼ୋଶୀଘରକୁ ଗଲା । ଦାଣ୍ଡ ବାରଣ୍ଡାରେ ଯେ ମାନୀ ଛିଡା ହୋଇଛନ୍ତି ! ତା ପାଖରେ ସେହି

ଭଦ୍ରକାନ୍ତ ଜଣକ କିଏ ? ଯେଉଁଠି ଦେଖିଲାପର ମନେ ହେଉଛି । ବିଦେଶୀ ହୋଇଥିବେ । ହଁ, ମାମା ନା ଟେଭିସ୍ ପିନ୍ଧିଛି : ପାତିଳା ଜର୍ଜେଟ କନାର ମ୍ୟାକ୍ସି ଭିତରୁ ଫୁଟି ଉଠୁଛି ତା ରୂପ ଲାବଣ୍ୟ । ନୀଳିମା ଆଉ ଆଗକୁ ଅନାଇ ପାରିଲାନି । ଭଦ୍ରକାନ୍ତ ଜଣାନ୍ତି ବେଶ୍ ମାମାକୁ ଅନେକ ହସି ହସି କଥା କହୁଛନ୍ତି । ନୀଳିମା ନିଜକୁ ଲୁଚାଇଦେଲା ଓ ଦୃଷ୍ଟି ଫେରାଇ ନେଇ ଘର ଭିତରକୁ ପଶିଯାଉଥିଲା । ମାମା ଡାକିଲା : ହେ ନୀଳୁ ଅପା, 'ନୂଆ' ଯିବୁ ?

ନା ଲୋ, ମୋର କାମ ଅଛି । ସେମାନଙ୍କ ପାଖରୁ ମୁକ୍ତି ପାଇ ଯିବାକୁ କହିଲା ନୀଳିମା ।

: "କଥା କ'ଣ କି", ମାମା ଏପାଖ ସେପାଖ ଅନାଇଲା ଆଉ ତୁନିତୁନିକା କହିଲା, "ବୋଉ ମୋତେ ଏକା ଛାଡ଼ନ୍ତି ନା । ତମେ ଯଦି ଯାଆନ୍ତ..." ନୀଳିମା ସବୁ କଥା ଠଉରାଇ ନେଲା । ତଥାପି ତା ମନ ରଖିଲା ଭଳି କହିଲା : ମୋର କ'ଣ ଯିବାକୁ ଇଚ୍ଛା ନାହିଁ; ବୋଉ ପରା ଘରେ ନାହିଁ । ଟୁଲୁ ପାଖକୁ ପୁଣି କିଏ ନଷ୍ଟ ଯିବ । ମୁଁ ଆଉ ଦିନେ ତୋ ସହିତ ନିଶ୍ଚୟ ଯିବି । ଏତିକି କହିଦେଇ ସେ ଭିତରକୁ ଗ୍ଲିଗଲା । ମାଉସୀ ଏସେନ୍‌ସ ଶିଶିଟା ଖୋଜି କରି ଦେଲେ । କହିଲେ : ଭୁଲିଲୁ ଯାଇଥିଲୁ ଫେରାଇବାକୁ । ତୁ କେକ୍ କରୁଛୁ କି ? କହିଲୁ, ତୁ କେତୋଟା ଅଣ୍ଡା ଦେଉଛୁ ?

: କାହିଁ, ଗୋଟାଏ ତ ।

: ହଉଛି ? ମୁଁ ଗୋଟାରେ ସବୁବେଳେ କରୁଛି ଯେ କିଏ କିଏ କହୁଛନ୍ତି ଦୁ'ଟାରେ ବି ଭଲ ଲାଗୁଛି ।

: ହବନି କାହିଁକି ? ଦୁଧ ଅଳ୍ପ ପକେଇଲେ ବେଶ୍ ନରମ ଲାଗିବ । ନୀଳିମା ଆଉ ବେଶି ସମୟ ଛିଡ଼ା ହେଲା ନି । କହିଲା : ଯାଉଛି ମାଉସୀ, ବୋଉ ଘରେ ନାହିଁ ।

ସବୁ କାମ ସାରି ଓଭନରେ କେକ୍ ବସାଇ ମୁହଁ ହାତ ଧୁଆଧୋଇ ହେଲା ବେଳେ ପୁଣି ଥରେ ତା'ର ମାମୀର ଡ୍ରେସ୍ କଥା ମନେ ପଡ଼ିଲା । କେମିତି ସେ ପିନ୍ଧି ପାରୁଛି ? ଲାଇନାଂ ଦେଇ ପିନ୍ଧିଥିଲେ କ'ଣ ହେଇ ନଥାନ୍ତା ? କହିବ କି ତାକୁ ? କି ଦର୍କାର ତା'ର ! ଆଜିକାଲି ତ ସେମିତି ସମସ୍ତେ ପିନ୍ଧୁଛନ୍ତି । ଥରେ

ସେ ନଜେ ହ୍ୟାଣ୍ଡଲୁମ୍‌ର ଖଣ୍ଡେ ମ୍ୟାକ୍‌ସି ପିନ୍ଧି ଦାଣ୍ଡରେ ବସିଥିଲା । ଗେଟ୍ ପାଖରେ, ଯେଉଁଦିନ ଅଗ୍ନିକ ତାଙ୍କୁ ଦେଖି ନେଇ, ସେ ଚମକି ପଡ଼ିଥିଲା ଓ ଚଟ୍‌କିନା ଘର ଭିତରକୁ ଉଠିଯାଇ ଶାଢ଼ୀ ପିନ୍ଧି ନେଇଥିଲା । ତଥାପି ଭାବିଥିଲା, ତା'ର ମ୍ୟାକ୍‌ସି ପିନ୍ଧା ଦେଖି ହୁଏତ ପାର୍ଥ କହିବ : ଭଲ ଲାଗୁଛି ତମେ ଏ ପୋଷାକରେ । କିନ୍ତୁ ସେପରି କିଛି ଶୁଣି ନଥିଲା ସେ; ବରଂ ବହୁତ ସମୟପରେ କଥା ପ୍ରସଙ୍ଗରେ ପାର୍ଥ କହିଥିଲା :- ଝିଅମାନେ ଶାଢ଼ୀ ପିନ୍ଧିଲେ ହିଁ ବେଶ ଭଲ ଲାଗନ୍ତି । ଲାଜରେ ସଢ଼ି ଯାଇଥିଲା ନୀଳିମା ।

ନୀଳିମା ମୁହଁ ପୋଛିଲା । ଶାଢ଼ୀଟା ପିନ୍ଧି ସାମାନ୍ୟ ମେକ୍‌ଅପ୍ ନେଲା । ବାଜୁନା ଆସୁନି କାହିଁକି ? ଦାମ ନନା ତ ଅଛି, ସେ ବ୍ଲ୍ ସିବ କି ଆଉ ? ନୀଳିମା ମୁହଁରେ ଅସ୍ଥିରତା । ତଥାପି ସେ ନିଜକୁ ସମ୍ଭାଳି ନେଇ ଦାମ ନନା ହାତରେ ଟୁଲୁ ପାଇଁ ଜିନିଷ ସଜାଡ଼ିଲା । ଗତ ଛୁଟିରେ ଟୁଲୁ ବହୁ ଗୁଡ଼ିଏ ଦେଇ ଯାଇଥିଲା— ତାଙ୍କୁ ଆଣି ସଜାଡ଼ି ଥୋଇଲା । ଟୁଲୁ ପାଇଁ ଖଣ୍ଡେ ଚିଠି ଲେଖିଲା ଆଉ ତା'ପରେ ଗ୍ରେଟ ପଯବ୍ରରେ କିଛି ପଇସା ପୂରାଇ ଭାବିଲା. ଛକଟା ଏଠୁ କେତେ ବାଟ କି ? ମାତ୍ର ଦଶ ମିନିଟର ରାସ୍ତା । ପାଦରେ ଚପଲ ଗଳେଇ ସେ ଦାମ ନନାକୁ ଡାକି କହିଲା : ମୁଁ ଯାଉଛି, ଏଇ ସବୁ ଜିନିଷ ରହିଲା, ତମେ ଖାଲି କେକ୍‌ଟା ଓଭନ୍‌ରୁ ଓହ୍ଲାଇ ଦେଇ, ବାଜୁନା ଆସିଲେ, ଦେଇ ଦେବ । ବୁଝିଲ ? ବୋଉ ଆସିଲେ କହିବ, ମୁଁ ମନ ଘରକୁ ଯାଉଛି ।

ନାଇଁ ନାନୀ, ତମେ କାଢିଦେଇ ଯାଅ । ମୁଁ ଦେଇ ଇଲେକ୍‌ଟିର ତାରଟା ··

କାଢିପାରିବ ନି ? ଅଚ୍ଛା ମଣିଷ ! ନୀଳିମା ବୁଲିପଡ଼ିଲା । ଟେବୁଲ ଉପରେ ଥିବା ଓଭନ୍ ପାଖକୁ ଆସିଲା । ଏତେ ବେଳ ହେଲାଣି, କାହିଁକି କିଛି ବାସ୍ନା ହେଉନି ! କ'ଣ ହେଲା ? ସେ ନଇଁ ପଡ଼ିଲା ଓ ଓଭନ ଉପରେ କାଚ ଦେଇ ଦେଖିଲା, ଏ ପର୍ଯ୍ୟନ୍ତ କେକ୍ ଜମା ଫୁଲିନି । କ'ଣ ହେଲା ! ସେ ତ ଠିକ୍ ପ୍ଲଗ୍‌ଟା ଲଗେଇ ଥିଲା । ଆରେ, ନାଲି ଆଲୁଅଟା ଲିଭିଗଲା କେମିତି ? ସେ ପାଖ ସୁଇଚକୁ ଟିପିଲା । ଲାଇନ୍ ନାହିଁ । ନୀଳିମା ଦୀର୍ଘନିଃଶ୍ୱାସ ପକାଇଲା । ଝର୍‌ବେଳ ସାରା ଏତେ ପରିଶ୍ରମ ସେ କରିଥିଲା, ସବୁ ଚୂନା ହୋଇଗଲା ! ସେ ଆଉ ଆଗକୁ କିଛି ଭାବି ପାରିଲା ନାହିଁ ।

ଫୋନ୍ ରିଂ ହେଉଛି ସେପଟେ । ଦାମ ନନା ଉଠେଇବାକୁ ଗଲା । ବାପା ଫୋନ୍ କରିଛନ୍ତି ।

ସଜନୁକୁ କହିଲୁ ମା । ସେଠି ରଙ୍ଗାରଙ୍ଗ ହେଉଛନ୍ତି । ଝୁଲୁ କେମିତି ଅଛି, ଗୁହାରି କରି ଆସିବ । ତୋ ବୋଉ କାହିଁ ?

ମୁଁ ଝୁଲୁ ପାଖକୁ ଚିଠି ଲେଖି ଦେଇଛି, ବାପା ।

ନା-ନା ତୁ ସଜନୁକୁ କହିଦେ । ଘରେ ଅଛୁ ତ ? ନୀଳିମା ଆଉ କ'ଣ କହିବ ? ଫୋନ୍‌ଟା ରଖିଦେଇ ଥକ୍‌କା ମାରି ବସି ପଡ଼ିଲା ସେଇଠି ସୋଫା ଉପରେ । ଓଃ···ଆଜି କାହା ମୁହଁ ଚାହିଁ ଉଠିଥିଲା ସେ କେଜାଣି ! ନିଜ ଦେହକୁ ଅନେଇଲା ନୀଳିମା । ଗାଢ଼ ଜାମୁକୋଳିଆ ରଙ୍ଗର ପିଓର ସିଲ୍କ ଶାଢ଼ୀ, ମେଞ୍ଚି ରଙ୍ଗର ଟିପା ମଧ୍ୟ ଲଗେଇ ଥିଲା । ଆଇନାରେ ମୁହଁ ଦେଖିଲା ବେଳେ ନିଜ ମୁହଁ ପାଖରେ ଅନ୍ୟ କାହାର ମୁହଁ ଦେଖି ନିଜେ ସେ ଲାଜେଇ ଯାଇଥିଲା । ସେ ମୁହଁଟି ଏବେ କେଉଁଠି ? ହୁଏତ ସେଇ ମୁହଁ ସାରା ଏଇନା ଅପେକ୍ଷାର ଚିହ୍ନ ସବୁ ଫୁଟି ଉଠିଥିବ । ବରଂ ଅସ୍ଥିରତାରେ ଡାର୍କ ହୋଇ ପଡ଼ିଥିବ । ନୀଳିମା ଆଉ ଅନେଇ ପାରିଲାନି । ଦୁଇ ହାତରେ ମୁହଁ ଲୁଚାଇ କଇଁ କଇଁ ହୋଇ କାନ୍ଦି ପକାଇଲା ନୀଳିମା ।

ସବୁ ରାଗ ଯାଇ ଠୁଳ ହେଲା ସଜନା ଉପରେ । ଏତେ ବେଳଯାଏ ଦେଖା ନାହିଁ । ଆସୁ ସିଏ ।

କେତେ ସମୟ ସେ ସେମିତି ସୋଫାରେ ବସି ରହିଥିଲା ତାକୁ ଜଣା ନାହିଁ । ସେ ଉଠିଲା ଏଥର ସୋଫାରୁ ଓ ଘର ଭିତରୁ ବାହାରି ଆସି ବାଡ଼ି ବାରଣ୍ଡାରେ ଛିଡ଼ା ହେଲା । ଅଫିସରୁ ଲୋକମାନେ ଫେରିଲେଣି । ସଞ୍ଜ ନଇଁ ଆସୁଛି । ନୀଳିମା ଅନାଇଲା ଦୂରକୁ, ବହୁ ଦୂରକୁ । ଝାପ୍‌ସା ଝାପ୍‌ସା ଦିଶୁଛି ·· ତାକୁ ପଛ କରି କେହି ଜଣେ ଫେରି ଯାଉଛି । କି ଦୃପ୍ତ ଅଥଚ ଗମ୍ଭୀର ସେଇ ପଦପାତ, ସେ ଆଉ ଛିଡ଼ା ହୋଇ ପାରିଲା ନାହିଁ । କି ଏକ ବେଦନାରେ ଉତ୍ତେଜନାରେ ଘର ଭିତରକୁ ପଶି ଆସିଲା । ପଶି ଆସିଲା ସିନା, କିନ୍ତୁ କେମିତି ଏକ ତୀବ୍ର ଗନ୍ଧରେ ନାକ ତା'ର ରୁନ୍ଧ ହୋଇ ପଡ଼ିଲା । କେଉଁଠାରୁ ଆସୁଛି ସେ ଗନ୍ଧ ? ସେ ଚାରିଆଡ଼କୁ ଅନାଇଲା ଓ ଓଭନ ପାଖକୁ ଆସି ଚମକି ପଡ଼ିଲା କେକ୍‌ଟି ପୂରାପୂରି ପୋଡ଼ିଯାଇଛି । କେତେବେଳେ ଲାଇନ ଆସିଲା, କେତେବେଳେ ?

କେତେବେଳେ, କେଉଁ ଫାଙ୍କରେ, କିଏ ଏତେ ନିର୍ମମଭାବରେ ତା'ର ଖାଲିବେଳର ସକଳ ଆନନ୍ଦକୁ ପୋଡ଼ି ପାଉଁଶ କରିଦେଇ ଗଲା ।

# ଯୁଗ ସ୍ରଷ୍ଟା

ନନ୍ଦିନୀ ଶତପଥୀ

ଘରଟା ନିଛାଟିଆ ଲାଗୁଛି । ସକାଳ ନ'ଟା ବାଜି ଗଲାଣି । ଏତେବେଳକୁ ଚାକର ପୁଷ୍ଟାସ୍ପିଙ୍କ ଉପରେ ଦୁ'ଅଧଣ୍ଟା ଗାଳି ଖାଇ ଗୁହାଳରେ ଗାଉଡ଼ ସାଙ୍ଗରେ ସାଆନ୍ତାଣୀଙ୍କ ପାଟିତୁଣ୍ଡ ଚାଲି ଥାଆନ୍ତା । ପିଲାଙ୍କ ଦଉଡ଼ ଧାପଡ଼, ଦୁମଦାମରେ ଘରଖଣ୍ଡିକ ଉଠୁଥାନ୍ତା, ପଡୁଥାଆନ୍ତା ! ଆଜି କିନ୍ତୁ ସବୁ ଚୁପଚାପ ! ରୋଷେଇ ଘରେ କାମ ଚାଲିଛି କିନ୍ତୁ କଡ଼େଇ ଡେକ୍‌ଚିର ଝଡ଼ଝାଡ଼ କି ମହଲି ବାଟର ଘଡ଼ଘାଡ଼ ଶବ୍ଦ ଶୁଭୁ ନାହିଁ । ଏମିତି ଗୋଟାଏ ନୀରବତାକୁ ଭାଙ୍ଗି ଦେଇ ହଠାତ୍ ଦାଣ୍ଡ କବାଟରେ ଜୋରରେ କେହି ବାଡ଼େଇ ଦେଲା ।

ହଠେଇ ପଣ୍ଡାଙ୍କର ତନ୍ଦ୍ରାର ଖିଅ ଛିଣ୍ଡିଗଲା । ସକାଳ ପହରୁ ପଲଙ୍କଟା ଉପରେ ବସିରହି ସେଇ ଚୂନ୍‌ପକା ଖାତା ଖଣ୍ଡିକୁ ଏକ ଲୟରେ ଚାହିଁ ସେ କଣ ଭାବି ଚାଲିଛନ୍ତି । ଗାଧୋଇ ଯିବା ପାଇଁ ତାଗିଦ କରିବାକୁ ଥରେ ପଣ୍ଡିଆଣୀ ସେ ଘର ଭିତରକୁ ପଶି ଆସିଲେ । ତାଙ୍କ ପାଟିରୁ କଥା ନ ବାହାରୁଣୁ ହଠେଇ ପଣ୍ଡା ଚିହିଁକି ଉଠିଲେ ।

'ଏଠିକି ଆସି ଗୋଳମାଳ କର ନାହିଁ କହି ଦଉଛି । ପିଲା ଛୁଆ କାହାରି କି ଯଦି ଏ ଘର ଭିତରକୁ ଛାଡ଼ିଥିବ, ତେବେ ସମସ୍ତଙ୍କୁ ଦେଖିଦେବ, ଜାଣିଥା !' ଥରେ ପଣ୍ଡାଙ୍କ ମୁହଁକୁ ଓ ଆଉ ଥରେ ଖାତା ଖଣ୍ଡିକୁ ଚାହିଁ ଦେଇ କେମିତି ଗୋଟାଏ ଆତଙ୍କରେ ସେ ଘରୁ ପଣ୍ଡିଆଣୀ ପଦାକୁ ପଳେଇ ଆସିଲେ । ସେତିକି ବେଳୁ ଲୋକବାକ, ପିଲାଛୁଆ ସମସ୍ତେ ଚୁପଚାପ । କଥାବାର୍ତ୍ତା ସବୁ ଫିସ ଫିସ ହୋଇ, ଚାଲି ସମସ୍ତଙ୍କର ଥିରି ଥିରି । ନନାଙ୍କ ଶୋଇବା ଘରକୁ ଲାଗି ବାଟଘରଟା ହୋଇ ଥିବାରୁ ଦାଣ୍ଡକୁ ବାହାରିଲା ବେଳେ ସାନପୁଅ ଯୋତା ହଳକ ଗୋଡ଼ରେ ନ ପିନ୍ଧି ହାତରେ ଧରି ବାହାରି ଯାଇଛି । ଚାକର ଟୋକା ବାଡିପଟେ ସାଇକଲ ନେଇ୍ ଦୋକାନକୁ ଗଲା ।

କେହି ଜଣେ ଦାଣ୍ଡ କବାଟ ଖୋଲିଦେଲେ । 'ପଣ୍ଡାବାବୁ ଘରେ ଅଛନ୍ତି କି ?' ଆଗନ୍ତୁକଙ୍କର ପ୍ରଶ୍ନଟି କାନରେ ପଡ଼ିବା ମାତ୍ରେ ପଣ୍ଡା ଖଟରୁ ତଳକୁ ଓହ୍ଲାଇ ଆସିଲେ ଆଉ ଠିକ ସେତିକି ବେଳେ ରାଜାରାମ ବାବୁ ହେଲ ଘର ଭିତରକୁ ପଶିଯାଇ ତାଙ୍କୁ ନମସ୍କାର କଲେ ।

'ଗପଟି ଆପଣଙ୍କୁ କିପରି ଲାଗିଲା, ପଣ୍ଡା ବାବୁ ?' ଆମ୍ବଧଟାର କାଦୁଅ ଚଉକଟାକୁ ଖଟ ପାଖକୁ ଟାଣିଆଣି କହୁ କହୁ ପଚାରିଲେ ରାଜାରାମ ।

ପଣ୍ଡାବାବୁ ଟିକିଏ ଅଡ଼ମଡ଼ ହେଲେ । ଗପ ପଢ଼ିବା ତାଙ୍କ ଜୀବନରେ ଏଇଏ ପ୍ରଥମ । ପିଲାଦିନେ ବୁଢ଼ୀମା'ଠୁ ନୂଆଁ ଝିଅ ବୁଢ଼ୀ ଅସୁରୁଣୀ କି ଚଉଥିପୋଇ ଗପ ଭଳି ଦଶ ପାଞ୍ଚଟା ଗପ ସେ ଶୁଣିଥିବେ । ଆଜିକାଲି ପତ୍ରପତ୍ରିକାରେ ଯୋଉ ସବୁ ଗପ ଛପା ହେଉଛି, ସେସବୁ ପଢ଼ିବାକୁ କି ଜାଣିବାକୁ କେବେ ତାଙ୍କର ମନ ହେଇନାହିଁ । ଏବେ ପୁଅ-ଝିଅ ବା ଦେଳେ ବେଳେ ନାତି ନାତୁଣୀମାନେ ବଜାରରୁ ଭଲକି ଭଲ ପତ୍ରିକା କିଣି ଆଣୁଛନ୍ତି । ଥରେ ଅଧେ ଦାଣ୍ଡଘରେ ସେମିତି ବହି ଦେଖିଲେ ସେ ଓଲଟେଇ ପାଲଟେଇ ଛବି ଦେଖନ୍ତି—ଘର ଭିତରକୁ ଆଣି ପଢ଼ିବାକୁ କେବେ ତାଙ୍କର ଇଚ୍ଛା ହେଇନାହିଁ । ହିସାବ ଖାତା ଆଉ ପାଞ୍ଜି ଖଣ୍ଡିକ ଛଡ଼ା ଆଉ କିଛି ତାଙ୍କ ଘର ଆଲମାରିରେ ରହୁ ନଥିଲା । ସେଥିପାଇଁ ଖାଲି ଯେ ଖାତାରେ ଲେଖା ହୋଇଥିବା ହାତ ଅକ୍ଷର ପଢ଼ିବାକୁ ତାଙ୍କୁ କଷ୍ଟ ହେଲା ତା' ନୁହେଁ, ବିଷୟ ବି ହଜମ କରିବା ସହଜ ହେଲା ନାହିଁ । ତେଣୁ ରାଜାରାମ୍ ବାବୁଙ୍କ ସିଧାସଳଖ ଉତ୍ତର ନ ଦେଇ ସେ କହିଲେ, ଏବେ ଆପଣ ଆଉ କଣ କରିବାକୁ କହୁଛନ୍ତି ?'

ଅଧୈର୍ଯ୍ୟ ହୋଇ ରାଜାରାମ କହିଲେ, 'ମୁଁ ଠିକ ଜାଣେ ପରା ପଣ୍ଡାବାବୁ । ଆପଣ ଯେଉଁ ରୁଚିର ଲୋକ ନାଁ, ଗପଟା ଏକଦମ ଆପଣଙ୍କ ମନକୁ ଧରି ଯାଇଥିବ । ଏଥର କାମଟା ଆରମ୍ଭ ହୋଇଯାଉ !''

ଶୂନ୍ୟ ଦୃଷ୍ଟିରେ ରାଜାରାମଙ୍କ ମୁହଁକୁ ଚାହିଁ ରହିଲେ ନଟେଇ ପଣ୍ଡା । କଥାଗୁଡ଼ାକ କାନରେ ବାଜୁଛି, କିନ୍ତୁ ମୁଣ୍ଡରେ ପଶୁ ନାହିଁ । ଘରର ଚାରିକାନ୍ଥ ଉପରେ ତାଙ୍କର ଦୃଷ୍ଟି ଏଥର ବୁଲି ଆସିଲା । ନୂଆ ଘର – ବର୍ଷେ ହେଲା ପରଶୁ ସାହିର ସେଇ ଛୋଟ ସନ୍ତସନ୍ତିଆ ଘର ଛାଡ଼ି ସେ ଏଠାକୁ ଆସିଛନ୍ତି । ସେଇ ତିନି ବଖରା ଭଡ଼ା ଘରେ ରହି ଏବେ ସେ ନିଜେ ଏଡ଼େ ବଡ଼ଘର ତୋଳେଇଛନ୍ତି ।

ଉପର ତଳ ଖଞ୍ଜା ହୋଇ ଚାର ବଖରା ଘର । ସେଥିକୁ ଗୃହିଁ ଅଗଣା, ଗୁହାଳ ଘର । ଗ୍ରକର ବାକରଙ୍କ ପାଇଁ ବାଡ଼ ପଟେ ଧାଡ଼ିଏ ଝାଇଲ ଛପର ଘର । ଏବେ ପୁଣି ବଡ଼ପୁଅ ଗେରେଜ ଘର ତିଆରି କରୁଛନ୍ତି—କାର୍‌ଟାଏ କିଣିବ ବୋଲି ଭୁଝାବୁଝି କରୁଛି ।

'କଣ ଏତେ ଭାବୁଛନ୍ତି ପଣ୍ଡାବାବୁ ? ମୁଁ ଭାବୁଛି ମହାଦେବ ମନ୍ଦିର ଆଉ ତାର ଯେଉଁ ସବୁଜଣ୍ଟିଂଟା ଗପରେ ଅଛି ତା'ର ସୁଟିଂ ପାଇଁ ଆପଣଙ୍କ ଗାଁଟା ବୋଧହୁଏ ଭଲ ହେବ । ଆପଣ ଯେଉଁ ବର୍ଣ୍ଣନା ଦେଉଥିଲେ କେଦାରେଶ୍ୱର ମନ୍ଦିରର··· ।'

କେଦାରେଶ୍ୱରଙ୍କ ମନ୍ଦିରରେ ଘଣ୍ଟା ବାଜୁଛି । ମହାଦେବଙ୍କ ସକାଳ ଅଭିଷେକ ! ଗର୍ ଗର୍ ହୋଇ ପାଣି ଚାଲା ହେଉଛି ଶିବଲିଙ୍ଗ ଉପରେ । ଗୋଟାକୁ ଗୋଟା ନଡ଼ିଆ ବାଡ଼ିଆ ହେଉଛି । ଘଡ଼ିରେ, ଗିନାରେ, ସାମୁଖେଇରେ କେହି କେହି ଆଣିଛନ୍ତି କ୍ଷୀର । ନଡ଼ିଆପାଣି, କ୍ଷୀର, ମିଶ୍ରି, ଚନ୍ଦନ, ବେଲପତ୍ର ସବୁ ମିଶାମିଶି ହୋଇ ଅଭିଷିକ୍ତ ହେଉଛନ୍ତି କେଦାରେଶ୍ୱର । ଓଁ ନମଃ ଶିବାୟ, ଓଁ ନମଃ ଶିବାୟ- ଅନବରତ ଉଚ୍ଚାରିତ ହେଉଛି ପୂଜକ ସଦେଇ ପଣ୍ଡାଙ୍କ କଣ୍ଠରୁ । ପିଲା, ମାଇପେ, ବୁଢ଼ା, ବୁଢ଼ୀ ସମସ୍ତେ ସେଇ ଅନ୍ଧାରୁଆ ସନ୍ତସନ୍ତିଆ ଗମ୍ଭୀରା ଭିତରେ ସାଷ୍ଟାଙ୍ଗ ହେଇ ପ୍ରମାଣ କରୁଛନ୍ତି— ସଦେଇ ପଣ୍ଡା ସମସ୍ତଙ୍କ ହାତରେ ପାଦୁକା ଢାଳୁଛନ୍ତି । ହାତ ଧୋଇବାକୁ ଦଉଛନ୍ତି ଆଉ ଗୋଟେ ଢାଳରୁ ପାଣି !

ଏଇ ଛବିଟା ଉପରୁ ଆଖି ଉଠେଇ ଆଣି ରାଜାରାମଙ୍କୁ ଦେଖିବା ପାଇଁ ଟିକିଏ ସମୟ ନେଲେ ନବଘନ ପଣ୍ଡା । ଆସ୍ତେ ଆସ୍ତେ କହିଲେ, ମୁଁ ସବୁ ଗୁଡ଼ାକ କଥା ଠିକ ଭାବରେ ବୁଝି ପାରୁନାହିଁ ରାଜାରାମ ବାବୁ । ଆମେ ତ ଏ ଲାଇନର ଲୋକ ନୋହୁଁ ! ତା'ଛଡ଼ା ଟଙ୍କା ପଇସା କଥାଟା ·· ।

ରାଜାରାମ ବାବୁ ଚଉକି ଛାଡ଼ି ଠିଆ ହୋଇ ପଡ଼ିଲେ । 'ଆଃ, ଆପଣ କାହିଁକି ଚିନ୍ତା କରୁଛନ୍ତି ! ଡ଼ିରେକସନ ବିଷୟରେ ସବୁ ନୂଆ ଟେକନିକ ତକ ଶିଖି କାଲି ବମ୍ବେରୁ ଫେରିଲି କଣ ମୁଁ ମାହାଳିଆ ? ପଇସାପତ୍ର ଯେତିକି ଆପଣ ଯୋଗାଡ଼ କରିଛନ୍ତି ସେତିକରେ ମ୍ୟାନେଜ କରିବା ଦାୟିତ୍ୱ ଆପଣ ମୋ ଉପରେ ଛାଡ଼ି ଦିଅନ୍ତୁ ।

ଏତିକି ବେଳେ ସାନପୁଅ ଅଜୟ ଦୁଇଜଣ ଭଦ୍ରଲୋକଙ୍କୁ ଧରି ଘର ଭିତରକୁ ପଶି ଆସିଲା । ନଟେଇ ପଣ୍ଡା କିଛି କହିବା ଆଗରୁ ରାଜାରାମ ଉଠିଆସି ପରିଚିତି କଲେ । 'ଆସନ୍ତୁ' ଆସନ୍ତୁ ସମ୍ପାଦକ ବାବୁ ! ଆରେ ଶ୍ରଦ୍ଧାବାବୁ ବି ଆସି ଯାଇଛନ୍ତି ! ବଡ଼ ଭାଗ୍ୟ ଆମର ! ପଣ୍ଡାବାବୁ, ଏ ଦୁହେଁ ହେଲେ ଦୁଇଟି ସୁଖ୍ୟାତ ଚଳଚ୍ଚିତ୍ର ପତ୍ରିକାର ସମ୍ପାଦକ । ଆପଣଙ୍କ ସଙ୍ଗେ ଇଣ୍ଟରଭିଉ କରିବାକୁ ଆସିଛନ୍ତି । ପୂଜା ସଂଖ୍ୟାରେ ଆପଣଙ୍କ ଫଟୋ ସହିତ ସେ ସବୁ ଛପା ହୋଇଯିବ ।'

ସମ୍ପାଦକ ବାବୁ ଦୁଇହାତ ଯୋଡ଼ି ବିନୟର ସହିତ କହିଲେ, 'ଆଜ୍ଞା' ! ଆପଣଙ୍କ ପରି ଜଣେ କଳାପ୍ରେମୀ ଓ ଓଡ଼ିଆ ଚଳଚ୍ଚିତ୍ରର ପୃଷ୍ଠପୋଷକଙ୍କୁ ସାକ୍ଷାତ କରି ଆମେ କୃତାର୍ଥ ହେଲୁ । ଆପଣ ଆମ ପତ୍ରିକା ପାଇଁ କିଛି କୁହନ୍ତୁ ? ସଙ୍ଗେ ସଙ୍ଗେ ଦୁହେଁ ସାନ ଦୁଇଟି ଚଉକି ଟାଣିଆଣି ବସି ପଡ଼ିଲେ ଏବଂ ପକେଟରୁ କାଗଜ କଲମ କାଢି ଅତି ମନୋଯୋଗୀ ଛାତ୍ରଙ୍କ ପରି ପଣ୍ଡାଙ୍କ ମୁହଁକୁ ଚାହିଁ ରହିଲେ ।

ଗାଁ ପ୍ରାଇମେରୀ ସ୍କୁଲରେ ହେଡ଼ମାଷ୍ଟ୍ରେ ଶ୍ରୁତଲିଖନ ଡାକିଲା ବେଳେ ଶିବା ମିଶ୍ର ଆଉ ଗଦା ପଣ୍ଡା ଏମିତି ସାରଙ୍କ ମୁହଁକୁ ଚାହିଁ ରହୁଥିଲେ । ଆଉ ସାର ପାଟି ଖୋଲିବା ମାତ୍ରେ ଟପଟପ କଥା ଗୁଡ଼ାକ ଖାତାରେ ଲେଖି ପକାଉ ଥିଲେ । ନଟେଇର କିନ୍ତୁ ହାତ ମୋଟେ ଚାଲୁ ନ ଥିଲା ! ଶିବା ଆଉ ଗଦାଙ୍କ ଉପରେ ତ ସେ ରକ୍ତ ଚାଉଳ ଚୋବାଉ ଥିଲା—ସାରଙ୍କ ଉପରେ ବି ତା'ର କିଛି କମ୍ ରାଗ ହେଉ ନ ଥିଲା । ସେମିତି ରାଗରେ ଦିନେ ଶ୍ରୁତଲିଖନ କ୍ଲାସରୁ ସେ ଯେଉଁ ଛୁଟି ଆସିଥିଲା ତା ପରଠାରୁ ଆଉ ସ୍କୁଲ ଦୁଆର ମାଡ଼ିଲା ନାହିଁ ।

ନଟେଇ ବାବୁଙ୍କୁ ହଠାତ୍ ଚିନ୍ତାମଗ୍ନ ହୋଇଯିବାର ଦେଖି ରାଜାରାମ ଅବସ୍ଥାଟା ସମ୍ଭାଳି ନେବାକୁ ଚେଷ୍ଟା କଲେ 'ଦେଖନ୍ତୁ ଆଜ୍ଞା ! ପଣ୍ଡାବାବୁ ଜଣେ ଭାବୁକ ଓ କଳାକାର ! ସେ ଯେଉଁ ବିଷୟଟିକୁ ଚିତ୍ରରୂପ ଦେବାକୁ ଚେଷ୍ଟା କରୁଛନ୍ତି ତାହା ଅତ୍ୟନ୍ତ ଉଚ୍ଚ କୋଟୀର । ସେ ବିଷୟରେ ବିଶଦ ଆଲୋଚନା କରିବାକୁ ଟିକିଏ ସମୟ ଲାଗିବ । ଆଜି ବରଂ ଆପଣ ତାଙ୍କୁ ଦୁଇ ଚାରୋଟି ପ୍ରଶ୍ନ ପଚାରି ଦେଇ ଇଣ୍ଟରଭିଉଟା ସାରି ଦିଅନ୍ତୁ ।'

ଦିବାକର ବାବୁ ପ୍ରଶ୍ନ ପଚାରିବାକୁ ଧଳ ହେଉଥିଲେ ବେଳେ ରାଜାରାମ କବାଟ ପାଖକୁ ଉଠି ଆସି କାହାକୁ ଖୋଜିଲେ ପରି ବୃଦ୍ଧ ଆଡ଼କୁ ଚାହିଁଲେ । ତାଙ୍କୁ ଆଉଜି ନୀରବରେ ଦଣ୍ଡାୟମାନ ପଣ୍ଡା ବାବୁଙ୍କୁ ଦେଖି ମୁହୂର୍ତ୍ତରେ ସେଠାରୁ ଅପସରି ଯିବା ପାଇଁ ଉଦ୍ୟମ କରୁଥିଲେ । ତାହାଙ୍କୁ ସମ୍ବୋଧନ ନ କରି ରାଜାରାମ କହି ପକାଇଲେ, ଏ ଘରକୁ ଟିକିଏ ଜଳପାନ ?' ଜଳଖିଆ ପଠାଇ ଦେବାର ବନ୍ଦୋବସ୍ତ ହେଉ ।

ଶ୍ରଦ୍ଧାବାବୁ ପଚାରୁଛନ୍ତି : ଅନ୍ୟ ସବୁ କାମ ଛାଡ଼ି ଆପଣ ତନ୍ତ୍ର ଜଗତରେ କେବେ ଓ କାହିଁକି ପ୍ରବେଶ କଲେ ?

ଜଳପାନ ?' ଜଳଖିଆ ଅର୍ଡର ଦେଇ ରାଜାରାମ ଫେରି ଆସୁ ଆସୁ ନଟେଇ କହି ସାରିଥିଲେ—'ମୋର କିଛି କାମ ମୁଁ ଛାଡ଼ି ନାହିଁ କି କେଉଁଠି ପ୍ରବେଶ କରି ନାହିଁ ।' ଦୁଇଜଣ ଯାକ ସାଙ୍ଗେ ସାଙ୍ଗେ ଲେଖିବାକୁ ଉଦ୍ୟତ ହେଲାବେଳେ ରାଜାରାମ ପାଟିକରି ଉଠିଲେ—'ଟିକିଏ ରୁହନ୍ତୁ ଆଜ୍ଞା ! ପ୍ରଶ୍ନଟା ବୋଧହୁଏ ପଣ୍ଡାବାବୁ ଠିକ୍ ଧରି ପାରି ନାହାନ୍ତି । ସରଳ ଭାବରେ ପଚାରିଲେ ଭଲ ।'

ମୁରୁକି ହସିଲେ ପୋଖତ ସାମ୍ବାଦିକ ଦିବାକର ବାବୁ । 'ଆଜ୍ଞା' ଆପଣ ବରଂ କୁହନ୍ତୁ ଆପଣଙ୍କ ବ୍ୟବସାୟ କଣ ?

'ମୁଁ ତ କାଠ ବ୍ୟବସାୟ କରେ ! ଏ ସହରରେ ସମସ୍ତେ ଜାଣନ୍ତି ! ଆମ ସାତ ପୁରୁଷ ଧନ୍ଦା କେଦାରେଶ୍ୱରଙ୍କ ପୂଜାକାମ ଛାଡ଼ି କୋଉକାଳୁ ଗାଁରୁ ଆସି ମୁଁ ଏଠି ଏ ବ୍ୟବସାୟ କରୁଛି ।' ଅତି ସରଳ ଭାବରେ ନଟେଇ ପଣ୍ଡା କହିଗଲେ ।

ଏଥର ଶ୍ରଦ୍ଧାବାବୁଙ୍କ ପାଳି ! ସେ ନଟେଇଙ୍କୁ ଖୁବ ଉତ୍ସାହିତ କରି କହିଲେ 'ବେଶ ଭଲ ! ଆପଣମାନଙ୍କ ପରି ଲୋକେ ଚଳଚ୍ଚିତ୍ର ଥିଆଟର କରିବାରେ ଆଗ୍ରହ ନ ଦେଖାଇଲେ ଆଉ କିଏ କରିବେ ? କିନ୍ତୁ ଆପଣଙ୍କର ଏଥିରେ ଆଗ୍ରହ ହେଲା କିପରି ? ପିଲାଦିନେ କଣ ଗାଁରେ ଯାତ୍ରା କି ଥିଏଟର ଇତ୍ୟାଦି ଆପଣ କରିଥିଲେ ?'

ପଣ୍ଡାବାବୁ ରାଜାରାମଙ୍କ ମୁହଁକୁ ଚାହିଁଲେ ଆଉ ଠିକ୍ ସେତିକି ବେଳକୁ ବଡ଼ ବଡ଼ ଥାଳରେ ଗରମ ସିଙ୍ଗଡ଼ା, ରସଗୋଲା, ବାଲୁସାହି, ଲଡ଼ୁ ଇତ୍ୟାଦି ଧରି ଚାକର ଟୋକା ସନା ପଶି ଆସିଲା ।

କଥାବାର୍ତ୍ତା ବା ପ୍ରଶ୍ନ-ଉତ୍ତର ସେତକରେ ସ୍ଥଗିତ ରଖି ସମସ୍ତେ ଜଳଯୋଗରେ ମନଦେଲେ । ବ୍ୟବସାୟ ସଂକ୍ରାନ୍ତୀୟ କିଛି କାଗଜପତ୍ର ଗୁମାସ୍ତାଙ୍କୁ ବୁଝାଇ ଦେବାକୁ ପଣ୍ଡା ବାବୁ ବି ଘରୁ ବାହାରି ଆସିଲେ । ରାଜାରାମ ମନେ ମନେ କ୍ଷୁବ୍ଧ ହେଲେ ମଧ୍ୟ କିଛି ପ୍ରକାଶ କଲେ ନାହିଁ ।

କଥାରେ କିନ୍ତୁ ଖିଲାପ କରି ନାହାନ୍ତି ରାଜାରାମ । ଗୁହ୍ଣ ଗୁହ୍ଣ ଅଭିନେତା-ଅଭିନେତ୍ରୀ ଯୋଗାଡ଼ ହୋଇଗଲେ । ଗାୟକ, ବାଦ୍ୟକାର ବି । ଗୀତ ବି ରେକର୍ଡ଼ିଂ ହୋଇଗଲା । ସୁଟିଂ ପାଇଁ ଲୋକେସନ ବି ସ୍ଥିର ହୋଇଗଲା । ପ୍ରାରମ୍ଭିକ କାର୍ଯ୍ୟ ସମାପ୍ତ ହେଲା ବେଳକୁ ନନ୍ଦେଇ ପଣ୍ଡାଙ୍କ ସଞ୍ଚିତ୍ତର ଧନ ଚତୁର୍ଥାଂଶ ମଧ୍ୟ ଶେଷ ହୋଇ ସାରିଥିଲା ।

କବାଟ ଆଉଜାଇ ସେଦିନ ଭଳି ଆଜି ମଧ୍ୟ ପଲଙ୍କ ଉପରେ ବସିଛନ୍ତି ନନ୍ଦେଇ ପଣ୍ଡା । କିନ୍ତୁ ସାମନାରେ ରୁଲ୍‌ପଡ଼ା ଖାତା ବଦଳରେ ଥୁଆ ହୋଇଛି 'ରୂପ ଜଗତ' ସିନେମା ମ୍ୟାଗାଜିନ । ସେଇ ପୃଷ୍ଠା ଉପରେ ବାରମ୍ବାର ପଣ୍ଡାଙ୍କ ଆଖିଟା ବୁଲି ଆସୁଛି ଯେଉଁଠି ତାଙ୍କର ଗୋଟିଏ ବଡ଼ ଫଟ—ଆଉ ତା' ତଳେ ଛପା ହୋଇଛି ଚଳଚ୍ଚିତ୍ର ଜଗତରେ ନବଯୁଗ ସୃଷ୍ଟା ! କଥାଟା ଥରକୁ ଥର ପଢ଼ୁଛନ୍ତି ପଣ୍ଡା । ସେ ତ କିଛି ସୃଷ୍ଟି କରିନାହାନ୍ତି । କେବଳ ଅର୍ଥ ଯୋଗାଇଛନ୍ତି । ତା' ହେଲେ – !

ରାଜାରାମ ବାବୁ ଯେ କୌଣସି ମୁହୂର୍ତ୍ତରେ ଆସି ପହଞ୍ଚି ଯିବେ । ଆଜି ସମସ୍ତ କଳାକାରମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇ ଦେବା ପାଇଁ ସେ କହିଛନ୍ତି । କିନ୍ତୁ କଣ କରିବେ ପଣ୍ଡା ବାବୁ ? ସମସ୍ତ ସଞ୍ଚୟ ଯେ ତାଙ୍କର ଶେଷ ! ଆଗକୁ ବଢ଼ିବାକୁ ସାହସ ପାଉ ନାହିଁ—କିନ୍ତୁ ପଛକୁ ବା ଯିବେ କେମିତି ? ପୁଣି ଥରେ ପତ୍ରିକାର ଖୋଲା ପୃଷ୍ଠା ଉପରେ ତାଙ୍କର ଆଖି ବୁଲି ଆସିଲା ।

ସ୍ତ୍ରୀ ଶକୁନ୍ତଳା ପଶି ଆସିଲେ ସେତିକି ବେଳକୁ ଘର ଭିତରକୁ । ପତ୍ରିକା ଉପରୁ ଆଖି ଉଠାଇ ସ୍ତ୍ରୀଙ୍କ ସର୍ବାଙ୍ଗରେ ଦୃଷ୍ଟି ବୁଲାଇ ଆଣିଲେ ପଣ୍ଡା ବାବୁ । ଆଉ ହଠାତ ଆଖି ଦୁଇଟା ଉଜ୍ଜ୍ୱଳ ହୋଇ ଉଠିଲା । ଅବସାଦ କଟିଗଲା ମୁହୂର୍ତ୍ତକ ଭିତରେ । ଖଟ ଉପରୁ ଉଠିପଡ଼ି ସ୍ତ୍ରୀଙ୍କ ହାତ ଧରି ବସାଇ ଦେଲେ ସେ ନିଜ ପାଖରେ ।

ଆଶ୍ଚର୍ଯ୍ୟ ହୋଇ ଶକୁନ୍ତଳା ଚାହିଁଲେ ସ୍ୱାମୀଙ୍କୁ । ଇଏ ନ ନୂଆ ବ୍ୟବହାର ! ଆଗ ଦିନେ ଭଲରେ ପଦେ ଅଧେ କଥାବାର୍ତ୍ତା ବି ଯାହା କରୁଥିଲେ ଏବେ ସାତ-ଆଠ ମାସ ହେଲା ତ ସେତକ ବି ବନ୍ଦ । କଥା ପଦେ କହିଲେ ଚିଡ଼ିକି ଉଠୁଥିଲେ ! ଆଜି କଣ ସୂର୍ଯ୍ୟ ପଶ୍ଚିମ ଦିଗରୁ ଉଠିଲେ କି ?

ପତ୍ରିକାଟି ଧୀରେ ଆଡ଼କୁ ବଢ଼ାଇ ଦେଇ ନଟେଇ ବାବୁ କହିଲେ— 'ଦେଖିଲ, କ'ଣ ଛପା ହୋଇଛି ?' ସ୍ୱାମୀଙ୍କର ଫଟୋଟିକୁ ନିରେଖି ନିରେଖି ଦେଖିଲେ ସେ କିଛି ସମୟ । ନଟେଇ ପଣ୍ଡା ଶକୁନ୍ତଳାଙ୍କ କାନର ବଡ଼ ବଡ଼ ପେଣ୍ଡି, ମୋଟା ବସ୍ତୁ ହାର ଆଉ ଦି' ଗୋଛା ଚୁଡ଼ି ଆଉ ସୁନାବାଲାକୁ ଆଗ୍ରହରେ ଥରେ କଳି ନେଲେ । ତା'ପରେ ଧୀରେ ଧୀରେ କହିଲେ, 'ତମର ଗହଣାତକ କିଛିଦିନ ପାଇଁ ମତେ ଧାର ଦିଅ ଶକୁନ୍ତଳା—ମାସ ଗୋଟାଏ ଦି'ଟାରେ ତମକୁ ଫେରାଇ ଦେବି ।' ଚମକି ପଡ଼ି ଚାହିଁଲେ ଶକୁନ୍ତଳା । ନିଜ କାନକୁ ବିଶ୍ୱାସ ହେଉନାହିଁ ।

'ଶୁଣ, ତମେ ତ ଜାଣ ଆମର ଗୋଟାଏ ସିନେମା ହେଉଛି । ଆଉ ମାସକରେ ବଜାରକୁ ବାହାରି ପଡ଼ିବ । କିନ୍ତୁ ଆଜି ଟଙ୍କା କିଛି ଜରୁରି ଲୋଡ଼ା ! ସେଥିପାଇଁ ତମ ଗହଣାତକ ବନ୍ଧା ରଖି କିଛି ଟଙ୍କା ନେଇ ଆସିବି ।'

ସ୍ୱାମୀଙ୍କ କଥା ଉପରେ କେବେ କଥା କହିନାହାନ୍ତି ଶକୁନ୍ତଳା—ରାଗିବା ତ ଦୂରର କଥା । ବାରବର୍ଷ ବୟସରେ ବାହାହୋଇ ପଣ୍ଡାଙ୍କ ଘରକୁ ଆସିବା ଦିନୁ ସେଇ ନୀତିର ବ୍ୟତିକ୍ରମ କେବେ ହୋଇ ନାହିଁ । କିନ୍ତୁ ଆଖି ତାଙ୍କର ଛଳ ଛଳ ହୋଇଗଲା । ବହୁ କଷ୍ଟରେ କେବଳ କହିଲେ, 'କଣ ସବୁଯାକ ଗହଣା ?

ନଟେଇ ପଣ୍ଡା ବି ବହୁ କଷ୍ଟରେ ମୁହଁରେ ହସ ଫୁଟାଇବାକୁ ଚେଷ୍ଟାକରି କହିଲେ —'ହଁ ଦୁଃଖ କର ନାହିଁ । ଦେଖୁଛ ତ ଏଇ ଫଟ ! କେତେ ବଡ଼ ସମ୍ମାନ ଇଏ । ଆହୁରି କେତେ କାଗଜରେ ଏମିତି ଛପା ହେବ । ତୁମକୁ କଣ ଖୁସି ଲାଗୁନାହିଁ ?'

ଗୋଟି ଗୋଟି କରି ଗହଣା କାଢ଼ୁ କାଢ଼ୁ ଶକୁନ୍ତଳାଙ୍କ ଆଖି ଆଗରେ କାଗଜର ଫଟୋଟି ଝାପସା ହୋଇ ଆସୁଥିଲା ।

# ସେ ପକ୍ଷୀ ଯାଉଛି ଉଡ଼ି

ଶ୍ରୀ ବିବୁଧ ରଞ୍ଜନ

ସବୁଦିନ ପରି ସେଦିନ ଯାଉ ଯାଉ ବଡ ଗଛଟା ଉପରେ ଗୋଟେ ଖୁବ୍ ସୁନ୍ଦର ହଳଦୀ ବସନ୍ତ ଚଢ଼େଇ ବସି ଥିବାର ଦେଖିଲି । ମୋ ପାଦ ଆପେ ଥମିଗଲା । ମୁଁ ଯାଇ ଛିଡ଼ା ହେଲି ସେ ଗଛ ତଳେ । ଗୋଟାଏ ଦୃଷ୍ଟିରେ ଚାହିଁ ରହିଲି ସେ ଚଢ଼େଇଟିକୁ । କି ସୁନ୍ଦର ଏ ହଳଦୀବସନ୍ତ ଚଢ଼େଇଟି ସତେ ! କିଛି ସମୟ ଦେଖି ସାରିବାପରେ ଫେରି ଆସିଲି । ତା'ପର ଦିନ ଗଲାବେଳେ ମୁଁ ତାକୁ ପୁଣି ଦେଖିଲି । କିଛି ସମୟ ଛିଡ଼ା ହୋଇ ଦେଖିବା ପରେ ଚାଲି ଆସିଲି । କ୍ରମେ ଏହା ଯେପରି ମୋର ଅଭ୍ୟାସରେ ପଡ଼ିଗଲା ! ହଳଦୀବସନ୍ତ ଚଢ଼େଇଟା ଡାଳ ଉପରେ ବସି ଫୁରୁରୁ ଫୁରୁରୁ ଉଡ଼େ । ଟିଁ ଗୁଁ ରାବେ । ଯେତେ ଡାକିଲେ ବି ପାଖକୁ ଆସେନା ସେ । ଚଢ଼େଇଟିକୁ ଦେଖିବା ବେଳେ ମୋର ମୋ ବୁଢ଼ୀମା କଥା ମନେ ପଡ଼େ ।

ମୁଁ ପିଲାଦିନେ ତାକୁ ଥରେ ପଚାରିଲି—ମା' ହଳଦୀବସନ୍ତ ଚଢ଼େଇର ଦେହ ହଳଦୀ କାହିଁକି ହେଲା ? ନାଲି କାହିଁକି ହେଲାନି ? ମା' ମୋତେ କହିଲା ସୀତା ଯେତେବେଳେ ଛୁଆ ହୋଇଥିଲେ; ଥରେ ସୀତାଙ୍କୁ ତାଙ୍କ ମା ଗୋଡ଼ରେ ବସାଇ ହଳଦୀ ଲଗେଇ ଦେଉଥିଲେ । ସୀତା ରାହା ଧରି କାନ୍ଦୁଥିଲେ । ସେତିକି ବେଳକୁ ଗୋଟାଏ ଚଢ଼େଇ ଆସି ପିଣ୍ଡା ଉପରେ ବସିପଡ଼ିଲା । ସୀତାଙ୍କ ମା ସେ ଚଢ଼େଇ ଧରି ସୀତାଙ୍କୁ ଦେଖାଇବାରୁ ତାଙ୍କ କାନ୍ଦ ବନ୍ଦ ହୋଇଗଲା । ହେଲେ ତାଙ୍କ ମାଙ୍କ ହାତର ହଳଦୀ ସେ ଚଢ଼େଇ ଦେହରେ ଲାଗିଗଲା । ସେହି ଦିନଠାରୁ ତା ଦେହ ହଳଦିଆ ।

ସୀତାଙ୍କ ପରି ମୁଁ ବି ମନେ ମନେ ଅନେକ ଦିନ ଧରି କାନ୍ଦୁଥିଲି । ଆଜି ଏ ହଳଦୀ ବସନ୍ତ ପକ୍ଷୀକୁ ଦେଖିବା ପରଠାରୁ ମୋ କାନ୍ଦ ବନ୍ଦ ହୋଇ ଗଲା । ତାପରେ ଧୀରେ ଧୀରେ ଚଢ଼େଇଟା ଯେତେବେଳେ ମୋତେ ଚିହ୍ନି

ଗଲା ଦିନେ ଆସି ମୋ ହାତରେ ବସିଗଲା । ମୁଁ ତାକୁ ଧରି ଗେଲ କଲି । ତା ଦେହ ଆଉଁସିଲି । ପ୍ରତିଦିନ ମୁଁ ତା ପାଖକୁ ଯାଏ । ସେ ମୋ ହାତରେ ଧରା ଦିଏ । ଖାଲି ଚିଁ ଚିଁ ଶବ୍ଦ କରେ । ସେ ମୋ କଥା ସ୍ପଷ୍ଟ ବୁଝି ପାରେନି କି ମୁଁ ତା କଥା, କିନ୍ତୁ ସେ ମୋର ପୋଷା ମାନି ଯାଇଥିଲା ।

ବାପା ଏକଥା ଜାଣିଲେ । ଦିନେ ଡାକି କହିଲେ ବାବୁ, ତୁ ସେ ହଳଦୀବସନ୍ତ ଚଢେଇଟା ଉପରେ ଯେତିକି ମନ ଦେଉଛୁ ସେତିକି ଯଦି ପଢାରେ ଦିଅନ୍ତୁ ତା ହେଲେ ଭଲ ହୁଅନ୍ତା । ମୁଁ ତ ଦେଖୁଛି ତୁ ଦିନକୁ ଦିନ ପଢାପଢି ଛାଡି ସାରିଲୁଣି ।

ବାପାଙ୍କର ଏଇ କେତେପଦ କଥା ମୋତେ ମୋର ହଜି ଯାଇଥିବା ବୋଉ ପାଖକୁ ଫେରାଇ ନେଇଥିଲା । ଠିକ୍ ବାପାଙ୍କ ପରି ବୋଉ ବି ଦିନେ ପିଲାବେଳେ ମୋତେ ଅକଟ କରି କହିଥିଲା - ବାବୁ, ମୁଁ ଏବେ ଦେଖୁଛି ତୁ ସବୁବେଳେ ଖାଲି କର୍ଣ୍ଣି ଧରିବାରେ ବ୍ୟସ୍ତ । ପଢାପଢି ଆଦୌ କରୁନୁ, ତୃତୀୟ ଶ୍ରେଣୀ ପାସ୍ କରିବୁ କେମିତି । ସେତେବେଳେ ମୋର କର୍ଣ୍ଣି ପଛରେ ଗୋଡ଼େଇ ଗୋଡ଼େଇ ଧରି; ତା ଲାଞ୍ଜ ତଳେ ସୂତା ବାନ୍ଧି ଉଡ଼େଇବା ଗୋଟାଏ ନିଶା ହୋଇଯାଇଥିଲା । ବୋଉର ସକଳ ବାରଣ ସତ୍ତ୍ୱେ ମୁଁ ସେତେବେଳେ ତା କଥା ମାନି ନାହିଁ ଦିନେ ବୋଉ କହିଲା — ବାବୁ, ତୁ କର୍ଣ୍ଣି ଧରା ଛାଡୁନୁ । କଣ ତୋତେ ସେଥିରୁ ମିଳୁଛି ? ତୁ ଜାଣିଛୁନା "କର୍ଣ୍ଣି ଧରଣ ମା ମରଣ" ଯିଏ କର୍ଣ୍ଣି ଧରିବ ତା ବୋଉ ମରିଯିବ । ଆଉ ସତକୁ ସତ ତାର କିଛି ଦିନ ପରେ ବୋଉ ମୋର ମରିଗଲା । ବୋଉ ମରିଗଲା ପରେ ମୁଁ ସବୁଦିନ ପାଇଁ କର୍ଣ୍ଣି ଧରା ଛାଡିଦେଲି ।

ବୋଉ ପାଇଁ ସିନା କର୍ଣ୍ଣି ଧରିବା ଛାଡିଦେଲି; ହେଲେ ବାପାଙ୍କ କଥା ମୁଁ ସେ ଚଢେଇ ପାଖକୁ ଯିବା ବନ୍ଦ କରି ପାରିଲିନି । ଗଞ୍ଜେଇ ଅଫିମର ନିଶା ପରି ଏହା ମୋର ଅଭ୍ୟାସରେ ପଡ଼ି ଯାଇଥିଲା ।

ତେବେ ଦିନେ ମୁଁ ମୋ ସମଧ୍ୟରେ ପହଞ୍ଚିଲା ବେଳକୁ ଯାହା ଦେଖିଲି ନିଜ ଆଖିକୁ ମଧ୍ୟ ବିଶ୍ୱାସ କରି ପାରିଲିନି । ଦେଖିଲି ମୋ ବଡ ଭାଇ ସେ ଗଛମୂଳେ ଛିଡ଼ା ହୋଇଛନ୍ତି । ତାଙ୍କ ହାତ ଉପରେ ସେ ହଳଦୀବସନ୍ତ

ଚଢ଼େଇଟା ବସି ପାଚିଲା ଫଳ ଖାଆନ୍ତି । ାପଟରେ ଭାଇଙ୍କୁ ମୁଁ ସେହି ଦୃଶ୍ୟରେ ଅନେକ ଥର ଦେଖିଲି । ଶୀତ ସଂନ୍ଧ୍ୟାରେ ମୋ ଦେହରେ ଜଳନ୍ତା ନିଆଁ ଲାଗିଲା ପରି ମୁଁ ଅନୁଭବ କଲି ।

ମୁଁ କିନ୍ତୁ ପୂର୍ବ ଭଳି ଯାଏ । ହଳଦୀ ବସନ୍ତ ଚଢ଼େଇଟି ମୋ ହାତରେ ପୂର୍ବପରି ଆସି ବସେ । ମୋ ଦେହ ଛୁଏଁ । ଶୀତ ସନ୍ଧ୍ୟାରେ କୁହୁଡ଼ି ଆସ୍ତେ ଆସ୍ତେ ଘନେଇଲା ପରି ସନ୍ଦେହର କୁହୁଡି ମୋ ମନ ଭିତରେ ଜମାଟ ବାନ୍ଧିବାକୁ ଲାଗିଲା । ଚଢ଼େଇଟା ତ ମୋ ହାତରେ ବସୁଛି—ବସୁଛି ବି ଭାଇଙ୍କ ହାତରେ । ମୋତେ ଦେଖିଲେ ଯେମିତି ଖୁସୀ—ସେମିତି ବି ଖୁସୀ ଭାଇଙ୍କ ପାଖରେ । ତେବେ ପ୍ରକୃତରେ ସେ କାହାର ପୋଷା ମାନିଛି । ଆମ ଦୁହିଁଙ୍କ ଭିତରୁ କାହାକୁ ମାଲିକ ଭାବେ ଗ୍ରହଣ କରିଛି ? କିଛି ଜାଣି ପାରିଲିନି ।

ଖରାଦିନେ ପର୍ବତରୁ ବରଫ ତରଳିଲା ପରି ଆସ୍ତେ ଆସ୍ତେ ଭାଇଙ୍କ ଉପରେ ଆସୁଥିବା ମୋର ହିଂସା, ରାଗ, ସନ୍ଦେହ ସବୁ ସେମିତି ତରଳି ଗଲା ।

ମୁଁ ଜାଣିବାକୁ ପାଇଲି ଯେ ଏଇ କିଛି ଦିନ ତଳେ ଭାଇଙ୍କ ପଞ୍ଜୁରୀ ଶୂନ୍ୟ କରି ଗୋଟେ ଚଢ଼େଇ ଦୁଇବର୍ଷ ରହିବା ପରେ ଉଡ଼ିଗଲା । ଭାଇଙ୍କ ହାତରେ ଏମିତି ଅନେକ ଚଢ଼େଇ ମନକୁ ମନ ଆସି ଧରା ଦିଅନ୍ତି । ପଞ୍ଜୁରୀ ଭିତରେ ମାସ ବର୍ଷ ରହି ଉଡ଼ି ଯାଆନ୍ତି । କିନ୍ତୁ ଏଇ ଶେଷ ଚଢ଼େଇ ପ୍ରତି ତାଙ୍କର ବେଶୀ ଆନ୍ତରିକତା ଆସି ଯାଇଥିଲା ।

ମୁଁ ଜାଣିବାକୁ ପାଇଲି ଯେ କାହାର ସିନା ସିନେମା ଦେଖିବା, କ୍ରିକେଟ୍ କମେଣ୍ଟାରୀ ଶୁଣିବା; ଶିକାର କରିବାରେ ସଉକ—ହେଲେ ଏ ଦୁଇ ଭାଇଙ୍କର ଚଢ଼େଇ ପ୍ରତି ଏତେ ଆସକ୍ତି ଆସିଲା କିପରି ? ଏ କିପରି; କୌଣସି କାହିଁକିର ଉତ୍ତର ନାହିଁ । ଏ ସବୁ ଜୀବନର ଗୋଟାଏ ନିର୍ଦ୍ଦିଷ୍ଟ ଦିକ ଉପରେ ଗୋଟାଏ ଗୋଟାଏ ଖିଆଲ । ଏ ସବୁ ଗୋଟାଏ ଗୋଟା ନିଶା । ଏ ବଡ଼ ଜବର ନିଶା । ଛାଡ଼ିବାର ନାହିଁ ।

ତେଣୁ ଯେତେବେଳେ ଅନୁଭବ କଲି ଯେ--ଏ ହଳଦୀବସନ୍ତ ଚଢ଼େଇଟିକୁ ପାଇ ଭାଇ ତାଙ୍କର ପୂର୍ବ ଚଢ଼େଇ ହରେଇଥିବା ଜନିତ ଦୁଃଖକୁ ଭୁଲିବାରେ ଲାଗିଛନ୍ତି ସେତେବେଳେ ଭାଇଙ୍କ ପ୍ରତି ହିଂସା ପରିବର୍ତ୍ତେ ଦୟା ହେଲା । ତେବେ

ଭାବିଲି ଭାଇତ ଗୃହକର୍ତ୍ତା କରୁଛନ୍ତି । ସେ ଯେଉଁଆଡ଼େ ଯିବେ ତାଙ୍କ ସହ ତାଙ୍କ ପଞ୍ଜୁରୀ ମଧ୍ୟ ଯିବ । ତେବେ ମୁଁ କଣ କରିବି ? ମନେ ମନେ ଠିକ କଲି ଭାଇ ଯଦି ଏ ହଳଦୀ ବସନ୍ତ ଚଢ଼େଇଟିକୁ ଆଣି ତାଙ୍କ ପଞ୍ଜୁରୀରେ ରଖନ୍ତି ତେବେ ମୁଁ କିଛି ପ୍ରତିବାଦ କରିବିନି । ଭାଇଙ୍କ ପାଇଁ ସାମାନ୍ୟ ଏକ ଚଢ଼େଇ କଣ ତ୍ୟାଗ କରି ପାରିବିନି ।

କିଛି କ୍ଷଣ ପାଇଁ ଆକାଶରେ ସ୍ଥିର ହୋଇଥିବା ବାଦଲ, ପର ମୁହୂର୍ତ୍ତରେ ପବନରେ ଅପସରି ଗଲାପରି ଏ ସମସ୍ତ ଭାବନାର ଯବନିକା ଭାଇ ନିଜେ ଆସି ଦିନେ ଟାଣି ଦେଲେ । ମୋତେ କହିଲେ—ବବୁ, ମୁଁ ଜାଣି ନଥିଲି ଯେ ସେ ହଳଦୀ ବସନ୍ତ ଚଢ଼େଇଟା ପ୍ରତି ମୋ ପୂର୍ବରୁ ତୋର ସଉକ ଥିଲା ବୋଲି । ଚଢ଼େଇଟା ପ୍ରତି ତୋର ଯେତେବେଳେ ସଉକ ଅଛି ତୁ ସେଇଟା ଆଣି ତୋ ପଞ୍ଜୁରୀରେ ରଖ । ସେ ଦିନଠାରୁ ଭାଇଙ୍କୁ ସେ ଗଛ ମୂଳକୁ ଯିବା ମୁଁ ଆଉ କେବେ ଦେଖି ନାହିଁ ।

ତେବେ ଏହି କିଛି ଦିନ ତଳେ ମୁଁ ଜାଣିଲି ଯେ—ଭୁବନେଶ୍ୱର ଠାରେ ଭାଇଙ୍କର କେହି ଜଣେ ବନ୍ଧୁ ଏକ ସୁନ୍ଦର ଚଢ଼େଇ ଭାଇଙ୍କ ପାଇଁ ଦେଖିଛନ୍ତି । ଭାଇ ସେ ଚଢ଼େଇକୁ ଆଣି ତାଙ୍କ ପଞ୍ଜୁରୀରେ ରଖିବେ । ସବୁଥର ସିନା ଲୁଚେଇ ଚଢ଼େଇ ଆଣି ତାଙ୍କ ଶ୍ରେଷ୍ଠ ପଞ୍ଜୁରୀରେ ରଖୁଥିଲେ ବୋଲି ସେ ତାଙ୍କ, ସୁବିଧା ଦେଖି ଉଡ଼ି ଯାଉଥିଲେ । ହେଲେ ଏଥର ବାଣୁଆ ସହ କଥାବାର୍ତ୍ତା ସରିଛି । ଦାମ୍ ଛିଡ଼ି ଯାଇଛି । ସଭିଙ୍କ ଆଗରେ ଯାଇ ସେ ବାଣୁଆ ଠାରୁ ଚଢ଼େଇ କିଣି ଆଣିବେ । ବାଣୁଆ କହୁଛି ଏ ଚଢ଼େଇଟା କୁଆଡ଼େ ପଞ୍ଜୁରୀ ଭିତରେ ମରିଯିବ ସିନା ହେଲେ ଉଡ଼ି ପଳେଇବନି ।

ମୁଁ ଭାବିଲି—ଭାଇତ ତାଙ୍କ ପଞ୍ଜୁରୀ ପାଇଁ ଚଢ଼େଇ ପାଇଗଲେ । ତେବେ ମୁଁ ସେମିତି ମୋ ହଳଦୀ ବସନ୍ତକୁ ବାଣୁଆ ଠାରୁ ସବୁଦିନ ପାଇଁ କିଣି ଆଣିଲେ କେମିତି ହେବ ? ବାପାଙ୍କୁ କହିଲି । ବାପା କିନ୍ତୁ ଆପତ୍ତି କଲେ । କହିଲେ ଭାଇ ରୋଜଗାର କରୁଛି ତା ପାଖରେ ପଇସା ଅଛି । ସେ ମାଙ୍କଡ଼ ରଖୁ କି କୁକୁର ରଖୁ, ଯାହା ରଖୁ—ସେ ତାକୁ ଖାଇବାକୁ ଦେଇ ପାରିବ । ରୋଗ ହେଲେ ଡାକ୍ତର ପାଖକୁ ନେଇ ପାରିବ । ସେଥିରେ ଆମର କିଛି କହିବାର ନାହିଁ । ତୁ ପଢ଼ା ପାଠ ପଢ଼ୁଛୁ ପାଠ ପଢ଼ । ଏ ସଉକି ପଛେ କରିବୁ । ମୋ ମନ ମରିଗଲା ।

ତଥାପି ମୁଁ ଦିନେ ଯାଇ ବାଣ୍ଡୁଆ ପାଖରେ ପହଞ୍ଚିଲି । କହିଲି ହେ ବାଣ୍ଡୁଆ, ତୁମେ ତ ଅନେକ ଚଢ଼େଇ ରଖିଛ । ତେବେ ତୁମର ହଳଦୀ ବସନ୍ତ ଚଢ଼େଇଟା ମୋତେ ଦିଅ । ମୁଁ ତାକୁ ସୁନାର ପଞ୍ଜୁରି ଭିତରେ ଯତ୍ନରେ ରଖିବି । ହେଲେ ବାଣ୍ଡୁଆ କହିଲା-ବାବୁ, ତୁମେ ପୁଣି ରଖିବ ହଳଦୀ ବସନ୍ତ ? ତୁମ ପାଖରେ ପଇସା କାହିଁ ଯେ ଚଢ଼େଇ ପାଳିବ । ତୁମେ ଚଢ଼େଇ ରଖି ପାରିବନି । ତା ଛଡ଼ା ହଳଦୀ ବସନ୍ତ ଚଢ଼େଇଟିକୁ ବିକିବାକୁ ମୁଁ ଗରାଖ ଠିକ୍ କରି ସାରିଲିଣି ।

ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । ଦିନବେଳା ମୋ ଆଖି ଆଗରେ ଜୁଳୁଜୁଳିଆ ପୋକ ଦେଖା ଦେଲେ ତା ପରଠାରୁ ଯେତେଥର ମୁଁ ସେ ଗଛ ମୂଳକୁ ଯାଇଛି କେବେ ଆଉ ହଳଦୀ ବସନ୍ତକୁ ଦେଖି ନାହିଁ । ସେ ଚଢ଼େଇଟା ପ୍ରତି ମୋର କିଭଳି ଏକ ଆକର୍ଷଣ ଆସି ଯାଇଥିଲା ତା ବିନା ମୋ ଦେହ ମନ ପୁରାପୁରି ଭାଙ୍ଗି ଗଲା ।

ବାପା କହିଲେ—ତୁ ଏଇ ଚଢ଼େଇଟା ପାଇଁ ଏତେ ମନ ଦୁଃଖ କରୁଛୁ ? ପାଠ ପଢ଼ । ବଡ଼ ମଣିଷ ହ । ତା'ପରେ ତୁ ତୋ ମନ ଇଚ୍ଛା ଅନୁସାରେ ଯାହା ଆଣି ତା ରଖିବୁ । ତେବେ ତୁ ମୋ କଥା ମାନି ଆଜିଠାରୁ ଗୀତା ପଢ଼ । ଗୀତାକୁ ଭଲ ପାଇବାକୁ ଚେଷ୍ଟା କର । ତୁ ଯେଉଁଦିନ ଠାରୁ ସେ ଚଢ଼େଇ ଅପେକ୍ଷା ଗୀତାକୁ ପ୍ରେମ କରି ଶିଖିବୁ —ଦେଖିବୁ ଜୀବନରେ ତୁ କେବେ ଦୁଃଖ ପାଇବୁନି । 'ଗୀତା' ପାଖରେ ଶାନ୍ତି ପାଇବୁ ।

କାଲି ରାତିରେ ମୋ ଭାଇ ଭୁବନେଶ୍ୱରରୁ ତାଙ୍କର ସେହି ସୁନ୍ଦର ଚଢ଼େଇଟିକୁ ଆଣି ଘରେ ପହଞ୍ଚିଲେ । ଏଡ଼େ ସୁନ୍ଦର ନୂଆ ଚଢ଼େଇଟିକୁ ଦେଖିବା ପାଇଁ ଗ୍ରେଟ ପିଲା, ବଡ଼, ସାନ, ବନ୍ଧୁବାନ୍ଧବ ସଭିଏଁ ଆମ ଘରକୁ ଧାଇଁବାରେ ଲାଗିଛନ୍ତି । ଘର ଆମର ଖାଲି ଯୋ ଘାରେ ପଡୁଛି ଉଠୁଛି ।

ହେଲେ ମୁଁ ବାପାଙ୍କ କଥା ମାନି ମୋ 'ଗୀତା' ପାଖରେ ବସିଛି । ଗୀତାକୁ ଏକ ଲୟରେ ଚାହିଁ ରହିଛି । ହେଲେ ଗୀତାର ସେହି ପୃଷ୍ଠା ଭିତରେ ମୋ ବୋଉ ମୁହଁ କେତେବେଳେ କେତେବେଳେ ନାଚି ଯାଉଛି । ଆଉ ଠିକ୍ ସେଇକବେଳେ ଲାଙ୍ଗୁଳରେ ସୂତାବନ୍ଧା କର୍କଟଟାଏ ଆସି ଭସି ଯାଉଛି । ପୁଣି କେତେବେଳେ ହଳଦୀ ବସନ୍ତ ଚଢ଼େଇଟା ତା ଡେଣା ଫଡ଼୍ ଫଡ଼୍ କରି ଉଡ଼ି ଯାଉଛି ।



# କର୍ତ୍ତିର ଝାମ୍ପା

ସୁଧାଂଶୁବାଳା ପଣ୍ଡା

ରାତି ଦଶଟା ବାଜିଲାଣି । କାନ୍ଥ ଘଣ୍ଟାକୁ ବାରମ୍ବାର ଲକ୍ଷ୍ୟ କରି ମୁଁ ପ୍ରାୟ ଅନ୍ୟମନସ୍କ ହୋଇ ପଡ଼ୁଛି । କାରଣ ନ'ଟା ପୂର୍ବରୁ ମୋର ଘରେ ପହଞ୍ଚିବାର କଥା । ଯେତେ ଶୀଘ୍ର ଶୀଘ୍ର କାମ ତୁଟାଇଲେ ବି କାମ ତୁଟି ପାରୁନି । ଅଶୋକ ସହିତ ଅଯଥା ବାକ୍ୟାଳାପରେ ଏଭଳି ବିଳମ୍ବ ଘଟିବାରୁ, ମୁଁ ଅଶୋକ ଉପରେ ବଡ଼ ବିରକ୍ତିର ସହିତ ଗୁଡ଼ାଏ ଅଭିସମ୍ପାତ ବର୍ଷଣ କରୁଥିବା ବେଳେ, ହୋଟେଲର ମାଲିକ୍ ଆସି ତାଙ୍କ ମହାନୁଭବ ଗୁଣରେ ମତେ ସୂଚେଇ ଦେଲେ ଯେ, "ବାକୀ କାମ କାଲିକି କଲେ ଚଳିବ, ଏତେ ରାତି ଯାଏଁ କାମ କରିବା ସେମିତି କିଛି ବିଶେଷ ଜରୁରୀ ନାହିଁ ।" ମୁଁ ଆଶ୍ୱସ୍ତ ହେଲି ଓ ହୋଟେଲ ମାଲିକଙ୍କୁ ମନେ ମନେ ଅଜସ୍ର ଧନ୍ୟବାଦ ଦେଇ ଯଥା ସମ୍ଭବ କ୍ଷିପ୍ର ପାଦ ବଢ଼େଇଲି ।

ହୋଟେଲରୁ ବାହାରି ଆସି ଦେଖେ, ତଥାପି ଅଶୋକ ଠିଆ ହୋଇ ରହିଛି ମୋର ପ୍ରତୀକ୍ଷାରେ । ତାକୁ ଦେଖି ମୋର ମନେ ହେଲା, ମୋ ଗତାନୁଗତିକ କାର୍ଯ୍ୟସୂଚୀରେ ଅଶୋକ ହେଉଛି ଯେମିତି ଅନ୍ୟ ଏକ ଅଂଶ, ତାକୁ ବି ଏଡ଼ି ଯିବା ମୋ ପକ୍ଷେ ସମ୍ଭବ ନୁହେଁ ।

କିନ୍ତୁ ଆଶାତୀତ ବିଳମ୍ବ ହୋଇ ଯାଇଥିବାରୁ, ମୁଁ ଅଶୋକକୁ ଦେଖି ପାରୁ ନଥିବାର ଛଳନା କରି, ଘରକୁ ଚାଲି ଯିବା ପାଇଁ ଚଳନା ମୁଲାଉଛି, ଅଶୋକ ଦ୍ୱିଗୁଣ ଉତ୍ସାହର ସହିତ ପଛ ପାଖରୁ ଆସି ମତେ ପ୍ରଶ୍ନ କରୁଛି, "କଣ ପ୍ରେମଜୀବନ କିମିତି ସାରିଚ ?

ଅଶୋକ ପ୍ରଶ୍ନରେ ମୁଁ ଏକ ଗମ୍ଭୀରତର ଉଦାସୀନତାରେ ଉପନୀତ ହୋଇ କହିଲି, ଦେଖ ଅଶୋକ ! ମୁଁ ତୁମକୁ ବାରମ୍ବାର ମନାକରି ଆସୁଛି ଯେ, ପ୍ରଭାତ ଘରକୁ ମୁଁ ଯାଇ ପାରିବିନି । ତଥାପି ତୁମେ ସେଇ ପ୍ରଶ୍ନକୁ ପୁନରାବୃତ୍ତି କରୁଚ । ମୁଁ ବର୍ତ୍ତମାନ ପ୍ରଭାତର ପୁଅ ଏକୋଇଶିଆ ଭୋଜି ଖାଇବାକୁ ଯାଉନି । ଯାଉଛି

ଘରକୁ । ପ୍ରେମନିବେଦନ କରିବାର ପ୍ରୟୋଜନ କ'ଣ ? ମୋର ସମସ୍ତର ଅଭାବ ସମୟରେ ତମେ ମୋତେ କ୍ରମାଗତ ଭାବେ ଯେଉଁ ଭଲ ଉତ୍ସାହ କରି ଚାଲିଚ, ସେବେ ନାଁ ସେବେ ମୋର ଏ ପ୍ରେମ ବ୍ୟାପାରଟା ଧରା ପଡ଼ିଯିବ ।

ପ୍ରେମ ବ୍ୟାପାର··· ? ଆକାଶରୁ ଖସିପଡ଼ିଲା ଅଶୋକ । ସେ ମନେ ମନେ ଭାବି ନେଲା ବୋଧେ, ତା' ସହିତ ମୋର ଏ ମିଳାମିଶାଟା କ୍ରମେ ଯୌନ କ୍ଷୁଧା ଆଡ଼କୁ ଗତିରେ ସଂଯମିତ କଲାଣି । ଯେଉଁଟା କି ବିନା ଦ୍ୱିଧାରେ ମୁଁ ପ୍ରକାଶ୍ୟ ଭାବେ ଘୋଷଣା କରି ପାରୁଚି । ବିବାହ ପୂର୍ବରୁ ଆମର ଏ ମିଳାମିଶାଟା ସମାଜ ପାଇଁ ଯେ ନିଶ୍ଚିତ ଭାବରେ ଏକ ଗୈର କାରବାର ଏଥିରେ ସନ୍ଦେହ ନାହିଁ ।

ମାତ୍ର ମୁଁ ତାର ସେହି ସନ୍ଦେହକୁ ମୋଚନ କରି ନେଇ ଅତି ଅସହିଷ୍ଣୁ ଗଳାରେ କହିଲି, ହଁ, ପ୍ରେମ ବ୍ୟାପାର ନୁହେଁ ତ ଆଉ କ'ଣ ଇଏ···? ଘରେ ସମସ୍ତେ ଜାଣନ୍ତି ଯେ ଜଣେ ପଦସ୍ଥ ଅଫିସରଙ୍କ ଝିଅକୁ ଖୁବ୍ କମ ସମୟ ପାଇଁ ମୁଁ ଟ୍ୟୁସନ କରିବାକୁ ଯାଉଛି । ଟ୍ୟୁସନରେ ଏତେ ବିଳମ୍ବ ହୋଇ ଯିବାଟା ନିହାତି ଅପ୍ରାସଙ୍ଗିକ ନୁହେଁ କି ?

ଏକ ବିରକ୍ତି ସୂଚକ ସ୍ୱରରେ ଅଶୋକର ପାଟିରୁ ଏକ ସଂକ୍ଷିପ୍ତ ଉତ୍ତର ଖସି ଆସିଲା, "ତା' ହେଲେ ତମେ ଯାଉନ···?"

ଅଶୋକ ସ୍ୱରଟା ମତେ ଏତେ ବେଖାପ୍ ଶୁଣାଗଲା ଯେ ମୁଁ ବିରକ୍ତ ନ ହୋଇ ରହି ପାରିଲିନି । ବଡ଼ ଅଶ୍ରଦ୍ଧାର ସହିତ କହିଲି, ମୋ ଯିବା ନ ଯିବା ସମ୍ପୂର୍ଣ୍ଣ ମୋ ଉପରେ ନିର୍ଭର କରୁଚି ଅଶୋକ ! ମୋ ଯିବା ପାଇଁ ତମେ ଏତେ ବ୍ୟସ୍ତ କାହିଁକି ମୁଁ ମୋଟେ ବୁଝି ପାରୁନି ।

କଥାରେ ମୋର ନିଶ୍ଚିତ ଆଘାତ ପାଇଲା ଅଶୋକ । କିନ୍ତୁ ମୁହଁରେ ତାର କୌଣସି ବିରକ୍ତି ସୂଚକ ଭାବ ପରିଲକ୍ଷିତ ହେଉ ନ ଥିଲା । ମୋର ଏତେ କଟୁ ଓ ତିକ୍ତ ବକ୍ତବ୍ୟ ସତ୍ତ୍ୱେ ଓଠରେ ତାର ସେଇ ଚିରନ୍ତନ ବେପରୁଆ ସ୍ମିତହସକୁ ଅକ୍ଷତ ରଖି କହିଲା, "ମୋର ଏ ଅନଧିକାର ଚର୍ଚ୍ଚା ପାଇଁ ଆଶା କରେ କ୍ଷମା ଦେବ ।"

କେଜାଣି କାହିଁକି ଅଶୋକର ଏଇ କଥା ପଦକ, ମୋ ଦୃଷ୍ଟିରେ ଅଶୋକକୁ ଏକାନ୍ତ ଅସହାୟ ପରି ମନେ ହେଲା । ମନେ ହେଲା ମତେ, ଯେମିତି ଗୋଟାଏ ଆକସ୍ମିକ ଯନ୍ତ୍ରଣାରେ ସେ ଭିଜି ଭିଜି ଯାଉଛି । ଭାବିଲି ଅଶୋକ ମନରେ ଦୁଃଖ ଦେଇ ମୁଁ ଭୁଲ କରିଛି । ମୋର ଯିବା ନ ଯିବାରେ ତାର ବା ସ୍ୱାର୍ଥ 'କଣ ? ମୋ ଗୃହକର୍ମର ନିଶ୍ଚିତତା ରକ୍ଷା କରିବା ଲାଗି ତାର ଏତେ ଚେଷ୍ଟା । ତା'ରି ଜରିଆରେ ପ୍ରଭାତ ହୋଟେଲରେ ମୋର ଏ ଗୃହକର୍ମ ଖଣ୍ଡିକ !

ଅଗତ୍ୟା ମୁଁ ନୀରବରେ ଠିଆ ହୋଇ ରହି ଥିବା ଦେଲେ, ଅଶୋକ ତାର ଅର୍ଦ୍ଧ ଦଗ୍ଧ ସିଗାରେଟକୁ ଜୋତା ତଳେ ଚାପି ଦେଇ ବଡ଼ ବଡ ପାହୁଣ୍ଡରେ ଆଗେଇ ଯାଉଥିଲା ଆଗକୁ···ଆଗକୁ··· ।

ରାସ୍ତାଟା ଯା ଭିତରେ ପୂର୍ବାପର ନିଶବ୍ଦ ହୋଇ ଗଲାଣି । ସେ ନିର୍ଜନ ରାସ୍ତା ଉପରେ ଆମର ଏ ପ୍ରକାର ଗତି ବିଧି ସିନେମାର ସୁଟିଂ ପରି ମନେ ହେଉଥିଲା । ତଥାପି ସେ ଅଭିନୟ ଭିତରେ ଦେଇ ମତେ ପହିଁରିବାକୁ ପଡ଼ିଲା ଓ ତା ଠାରୁ ଉତ୍ତର ଆଶା କରି ପଚାରିଲି, ତମେ ତ ଆମ ଘର କଥା ଜାଣିଚ, ଏତେ ରାତିରେ ମୁଁ ଯିବା ପାଇଁ ବୋଉ ହଁ କରିବକି ?

ଅଶୋକ ହସିଲା ଓ ଆଉ ଖଣ୍ଡେ ନୂଆ ସିଗାରେଟରୁ ଗୋଟାଏ ଅତୃପ୍ତ ଢୋକ ଗିଳି କହିଲା, ବୁଝିଲି ପଦ୍ମା ! ସ୍କୁଲ ପଢିବା ବେଳରୁ ଫ୍ରକ୍ ପିନ୍ଧା ଗ୍ରେଟ ଝିଅଟିଏ ପରି ବାଳିକା ସୁଲଭତା ଦେଖାଇ ମତେ ବୋକା ବନାଅନା । ସନ୍ଧ୍ୟା ବେଳର ଟ୍ୟୁସନ କରିବାକୁ ଆସି, ଯିଏ ରାତି ଗୃହକର୍ମକୁ ଭୁଲାଇ ପାରୁଚ, ସେ କ'ଣ ଆଉ ଘଣ୍ଟେ ଦି' ଘଣ୍ଟା ବିଳମ୍ବ ହୋଇ ଯିବାର କାରଣ ଦର୍ଶାଇ ପାରିବନି ?

ଅଶୋକର ଏ ଭଳି ତାଚ୍ଛଲ୍ୟ ଉଚ୍ଚାରଣରେ ମୋ ଆଖି ଛଳ ଛଳ ହୋଇଗଲା । କେମନ୍ତେଅବା ମୁଁ ତାକୁ ଆଉ ବୁଝାଇ କହିବି ଯେ, ଟ୍ୟୁସନ ଗୃହକର୍ମର, ଅତି ବେଶୀ ହେଲେ ମାସ ଶହେ ଦେଢ଼ ଶହ ଟଙ୍କାରେ ପରିବାରକୁ ପୋଷିବା ସମ୍ଭବ ହବନି ଭାବି, ବିପଦ ହେଲେ ବି ସାଢ଼େ ତିନିଶହ ଟଙ୍କାର ଏ ରାତି ଗୃହକର୍ମକୁ ବାଛି ନେଇଛି ମୁଁ ଜାଣି ଜାଣି । ଯା ହୋଇ ସେଇ ସୁଯୋଗ ନେଇ ଏତେ ଦୀର୍ଘ ସମୟ ବାହାରେ ରହିବା ମୋ ପକ୍ଷେ ସମ୍ଭବ କି ?

ହୋଉ ପଛାପାଟ ଧୋପା ନ ହୋଇ ଚାଲି ଚାଲି ପାରୁଥିଲେ ବି ଯେତେ ଅଭାବ ହେଉ ପଛେ ମତେ ଏଇ ନୂଆ ଗୃହକର୍ମ କରିବାକୁ ପଡ଼ି ନ ଥାନ୍ତା । ମୋର

ଚିନ୍ତାରେ ହୁଏତ ଆଜି ବାପାଙ୍କର ମସ୍ତିଷ୍କ ବିକୃତ ଦେଖା ଦେଇଛି । ଠିକ ଟାଇମ୍‌ରେ ସେ ଔଷଧ ନ ଖାଇଲେ ବାଉଳା ହୋଇ ପଡୁଛନ୍ତି । ବୋଉ ରୋଗାକ୍ରାନ୍ତ ହେଲେ ବି ସମୟ ଜ୍ଞାନ ହରେଇ ବସିନି । ଆଉ "ଆଶା" "ରେଖା" କେତେ ଠିକ ଠିକ୍ ଭଉଣୀ ଦି'ଟି ! କାହାକୁ ବିଳମ୍ବ ହୋଇ ଯିବାର କୈଫିୟତ୍ ଦେବି ମୁଁ ? ସମସ୍ତେ ତ ମତେ ଅପେକ୍ଷା କରି ବସିଥିବେ, ମୁଁ ଗଲେ ସେମାନଙ୍କୁ ରାନ୍ଧି ଖାଇବାକୁ ଦେବି ।

•

ତଥାପି ଅଶୋକ ତା' କଣ୍ଠରେ ଶ୍ଳେଷ ମିଶାଇ କହୁଥିଲା, "ତମର ଅନ୍ତତଃ ଏତିକି ଜାଣି ରଖିବା ଉଚିତ୍ ଯେ, ପ୍ରଭାତ ଆମର ଅନ୍ୟମାନଙ୍କ ପରି ଆଜେ ବାଜେ ସାଙ୍ଗ ନୁହେଁ । ତମର ଏ ଚାକିରି, ମୋ କଣ୍ଟ୍ରାକ୍ଟରୀ ପଛରେ ଖଟାଉ ଥିବା ସମସ୍ତ ଟଙ୍କା, ଏହା କିଛି କମ୍ ଅବଦାନ ନୁହେଁ । ସତରେ ଆମେ ତା' ପାଖରେ ଋଣୀ । ତା' ପୁଅର ଏକୋଶିଆ ଭୋଜିରେ ଆମର ଅନୁପସ୍ଥିତି ନିଶ୍ଚୟ ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବ ।"

ମୁଁ ଏଥର ସହଜ ହେବାକୁ ଚେଷ୍ଟା କଲି ଓ ବିନୟର ସହିତ କହିଲି, ଦେଖ ଅଶୋକ ! ଖାଲି ଆମେ ଦିହେଁ ନାହିଁକି ଆମ ଘର ଆହୁରି କେତେ ବେକାର୍ ହତଭାଗ୍ୟ ଓ ଅସହାୟ ଲୋକମାନେ ବି ପ୍ରଭାତ ପାଖରେ ଋଣୀ । କିନ୍ତୁ ସେ କଥା କ'ଣ ବିଚାର କରିବା ବେଳ ଇଏ ? ତମେ ତ ଆମ ଘର କଥା ଜାଣିଚ, କି ଉପାୟରେ ଯାଇ ପାରିବି କହିଲ ?

ଅଶୋକ କଥାରୁ ଜାଣି ପାରିଲି, ସେମିତି ମୋ ସହିତ ପ୍ରଥମ ଆଳାପରୁ ସେ ମୋତେ ଉପାୟ ବତାଇବାକୁ ଆସିନଥିଲା । ମୁଁ ଆଉ ଅନ୍ୟ ଉପାୟ ନ ପାଇ ଶେଷ ଅନିଚ୍ଛା ସତ୍ତ୍ୱେ କଥାରେ ତାର ରାଜି ହୋଇ, ଶେଷକୁ ଦୋକାନରୁ କିଛି ଭଜା ବଡ଼ ପାଉଁରୁଟି ଦି'ଟା ଓ ଗୋଟାଏ ବଟର ପ୍ୟାକେଟ କିଣି ଘରକୁ ଫେରିଲି ।

ପ୍ରକୃତରେ ସମୟ ହୋଇ ଯାଇଥିଲା ଅନେକ ଡେରି । ଘର ଭିତରେ ସମସ୍ତଙ୍କ ମୁହଁରେ ଏକ ଦୀର୍ଘ ପ୍ରତୀକ୍ଷା ଜନିତ କ୍ଳାନ୍ତି ମୁଁ ଅନୁଭବ କରିଥିଲେ ବି, ସେ କ୍ଳାନ୍ତିକୁ ମୁଁ ଅପନୋଦନ କରିବା ପାଇଁ ମୋର କୌଣସି ଉପାୟ ନ ଥିଲା । ବୋଉ ମୁହଁ ଉପରେ ଢାଙ୍କି ରହିଥିବା ଏକ ଅହେତୁକୀ ସନ୍ଦେହକୁ ଦୂର କରିବା ପାଇଁ ମୁଁ ଯେ ସନ୍ତୋଷଜନକ ଉତ୍ତର ଦେଇ ପାରିବିନି ଏ କଥା ମୁଁ ସ୍ପଷ୍ଟ ଜାଣି ପାରୁଥିଲି ।

ତଥାପି ବୋଉର ଅନନୁନାସିକ ସ୍ୱରର ବକ୍ତବ୍ୟ ଶୁଣିବା ଆଗରୁ ମୋତେ ମିଛରେ କୈଫୟତ୍ ଦବାକୁ ପଡ଼ିଲା ଯେ, ଟ୍ୟୁସନ କରୁଥିବା ଝିଅଟିର ଇଣ୍ଟରନାଲ ପରୀକ୍ଷା ଥିବା ଯୋଗୁଁ ମତେ କିଛି ସମୟ ଅଧିକା ପଢେଇବାକୁ ପଡ଼ିଲା ଓ ଆଉ କିଛି ସମୟ ଅଧିକା ପଢେଇବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ନ ପାରି, ପୁଣି ଥରେ ତା' ପାଖକୁ ମତେ ଏଇଲେ ଯିବାକୁ ପଡ଼ିବ ।

ଆଶା ଓ ରେଖା ନଦ ମଲ ମଲ ଆଖିରେ ପାଉଁରୁଟି ଭଜାର ଗୁଣ୍ଡିଆ ଛଡ଼ା ଛଡ଼ା ହୋଇ ଖାଉଥିବା ବେଳେ, ମୋର ଆଉ ଥରେ ଯିବା କଥା ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ବି ଚୁପ୍ ହୋଇ ରହିଗଲେ । କାରଣ ସେମାନଙ୍କ ବୟସର ଶିଶୁମାନେ ସନ୍ଦେହ ବି କରି ପାରନ୍ତି ନାହିଁ ଯେ ବଡ଼ ମଣିଷ ମାନେ ମିଛ କହନ୍ତି ବୋଲି । କିନ୍ତୁ ବୋଉ ଠିକ୍ ଜାଣି ପାରୁଥିଲା ମୁଁ ସତ କଥାଟା କହୁ ନାହିଁ । ବରଂ ଏଇ ଆପାତ-ସତ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରି ନେବା ପାଇଁ ବାଧ୍ୟ ହୋଇଥିଲା, କେବଳ ଉପାୟହୀନତା ହୋଇ । ଯେଉଁଠି ଗୋଟାଏ ନିଃସ୍ୱ ଅସହାୟ ପରିବାରର ଏକମାତ୍ର ଭରସା ହେଉଛି ଗୋଟିଏ ଝିଅ, ତା ପାଇଁ ଆଉ କଟକଣା କ'ଣ ?

ଘରର ସମସ୍ତ ଦାୟିତ୍ୱ ସମାପନ କରି ଦେଇ ଅଶୋକ ପାଖରେ ପହଞ୍ଚିଲା ବେଳକୁ, ମାତ୍ର ପଚିଶ ମିନିଟ୍ ସମୟ ଅତିକ୍ରାନ୍ତ ହୋଇଛି । ଏଇ ସ୍ୱଳ୍ପ ସମୟ ଭିତରେ ବି ଅଶୋକର ଧୈର୍ଯ୍ୟ ହାନିର ପ୍ରଚୁର ସଂକେତ ମୁଁ ଅନୁମାନ କରି-ପାରୁଚି । ମୋର ଉପସ୍ଥିତି ତାର ଅଧୀର କ୍ରୋଧକୁ ନିୟନ୍ତ୍ରିତ କରୁଥିଲେ ବି ସେଇ କ୍ରୋଧ ମିଶ୍ରିତ ସ୍ୱରରେ ସେ ମୋତେ କହୁଚି, "ଆସିବା ତମର ଯଦିଓ ଡେରି ହୋଇନି, ତଥାପି ଡେରି ହୋଇ ଯାଉଥିବାର କାରଣ ଦର୍ଶାଇ ଗୋଟେ ରିକ୍ସା ଚାଲି ଗଲା । ବାକି ଗୋଟାକରେ ଆମେ ଦୁହେଁ ..."

ଅଟକି ଯାଉଥିବା ଅଶୋକର ସ୍ୱରରେ ପୁରୁଷତ୍ୱ ଓ ତଦ୍ ଜନିତ ସଂଯମ ସ୍ପଷ୍ଟ ହୋଇ ଉଠୁଥିଲେ ବି, ମୋ ଆଶଙ୍କା ଅନୁଯାୟୀ ଅଶୋକର ଯେ ଏହା ଏକ ଚକ୍ରାନ୍ତ, ମୋ ପାଇଁ ଆଉ ଅଜଣା ରହିଲାନି । କିନ୍ତୁ ମୋର ଏଠି ଉପାୟ କ'ଣ ? ଅଶୋକ ତ ଚପଳ ଶିଶୁ ନୁହେଁ, ମାଙ୍କଡ଼ କୁମ୍ଭୀର ଗଳ୍ପରେ, ମାଙ୍କଡ଼ କଲିଜା ଗଛରେ ଆସି ଥିବାର କାରଣ ଦର୍ଶାଇ ଫେରି ଯାଇଥିବା ପରି, ମୁଁ ରୁମାଲଟେ, କି ମନି ପର୍ସଟା କି ସେଇ ଭଳି ଏକ ଦରକାରୀ ଜିନିଷ ଗଛରେ ଆସି ଥିବାର ବାହାନା ଦେଖାଇ ଏଠୁ ଲେଉଟି ଯିବା ସମ୍ଭବ କି ?

ଅଶୋକ କହୁଚି, "ଚାଲ ·· ଯିବା ଭାଇ ଏବେ ଗୋଟିଏ ଶଯ୍ୟାରେ ···"

ଏଠି କ'ଣ କହି ଅଶୋକ କବଳରୁ ରକ୍ଷା ପାଇବାକୁ ହେବ, ମୁଁ ଚିନ୍ତା କରି ପାରୁ ନ ଥିଲି । ସମ୍ପୂର୍ଣ୍ଣ ନୀରବ ଭାବେ ବ୍ୟାଧ-ଭୀତା ହରିଣୀ ପରି ଅଶୋକଙ୍କୁ ଚାହିଁ ରହିଲି ମୁଁ ··· । ନୀରବ ଅଶୋକ ନିଶ୍ଚଳ ହୋଇ ଠିଆ ହୋଇ ରହି, ନିର୍ବିକାର ଭାବରେ ସିଗାରେଟ୍ ଟାଣି ଚାଲିଚି · । କିନ୍ତୁ ଆଖି ଦୁଇଟା ବ୍ୟାଧର ଆଖି ପରି ଜଳି ଉଠୁଚି ବିଦ୍ୟୁତ୍‌ର ଆଲୋକରେ । ସେ ହିଂସ୍ର ଆଖି ଯେପରି ଆଦେଶ ଦେଉଚି, "ଉଠ ଶଯ୍ୟା ଉପରକୁ ··ଆଉ ଡେରି କାହିଁକି··· ? ଭାବୁଚ କି ମୋ କବଳରୁ ରକ୍ଷା ପାଇ ଯିବ ତମେ ?

ଘୃଣାରେ ମୁଁ ଶିହରି ଉଠିଲି । ଆଉ ସେହି ଘୃଣିତ ଅବସ୍ଥାରେ ଅଶୋକ କେତେବେଳେ ଗୋଟାଏ ଝାଙ୍କରେ ମତେ ଶଯ୍ୟା ଉପରକୁ ଉଠେଇ ନେଲଣି ମୋର ଖିଆଲ ନାହିଁ । ଆସ୍ତେ ଆସ୍ତେ ମୋର ସମସ୍ତ ଅବୟବରୁ ଶକ୍ତି କ୍ଷୀଣ ହୋଇ ଆସୁଚି । ମୁଁ ଠିକ୍ ଭାବେ ଅଶୋକର କାର୍ଯ୍ୟକଳାପକୁ ଅନୁଭବ କରିବା ଅବସ୍ଥାରେ ଆଉ ନାହିଁ । ସେ ସଂକୀର୍ଣ୍ଣ ସ୍ଥାନରେ ଏତେ ଲଗା ଲଗି ହୋଇ ବସିବା ଦ୍ୱାରା କିଛିଟା ବିସ୍ମୟ କିଛିଟା ଆତଙ୍କ ମତେ ଗ୍ରାସ କରିବାରେ ଲାଗିଛି । ଅଶୋକ ହାତରେ ଉଷ୍ମରୂପ କ୍ଷିପ୍ର ନିଃଶ୍ୱାସରେ ମୁଁ ଅତିଷ୍ଠ ହୋଇ ଉଠୁଚି । ମୋର ଭୟ ବିହ୍ୱଳିତ ଘୃଣିତ-ନୀରବ ଚାହାଣୀକୁ ଭ୍ରୂକ୍ଷେପ ନ କରି ଗୋଟାଏ ଅନ୍ଧ ଉଗ୍ରଲାଳସାରେ ଗୋଟାଏ ପିଶାଚ ପରି ଅଶୋକ ଉନ୍ମତ୍ତ ହୋଇ ଉଠିଚି··· । ମୋର ବାରମ୍ବାର 'ବାରଣରେ ଅଶୋକ ଆସ୍ତେ ଆସ୍ତେ ହୁଇସ୍କିର ନିଶା କାଟି ଏକ ଅନମନୀୟ ଉତ୍କଣ୍ଠାରେ କହୁଚି, ମୋର ଅନେକ ଦିନର ସ୍ୱପ୍ନ ଆଜି ବାସ୍ତବ ହେବାକୁ ଯାଉଚି ପଦ୍ମା ପ୍ଲିଜ୍ ମତେ ଏଥିରୁ ବଞ୍ଚିତ କରିଅନି । କୋଉ ପ୍ରଭାତ ଫ୍ରଭାତର ପୁଅ ଏକୋଣିଆ ଭୋଜି ଖାଇବାକୁ ଆମେ ଯାଉନେ । ଯାଉଚେ ବନ୍ଦୋବସ୍ତ କରି ଆସିବା ହୋଟେଲର ସବୁ ଠାରୁ ଗୋଟିଏ ମନୋରମ କକ୍ଷକୁ··

ମୋର ଉପାୟହୀନ କରୁଣ ଆର୍ତ୍ତି ଚିତ୍କାରରେ ଶଯ୍ୟାଟା ହଠାତ୍ ଅଟକି ଗଲା ଯେମିତି··· । ତଥାପି ଅଶୋକର ହିଂସ୍ର ଆକ୍ରମଣରୁ ମୁଁ ରକ୍ଷା ପାଇ ପାରୁନି । ବାରଣ କରିବାର ନିଷ୍ଫଳ ଚେଷ୍ଟାରେ ବିଳମ୍ବିତ ହେଉଚି ମୁଁ ଥରକୁ ଥର ।

ରିକ୍‌ସାର ପୁନଃ ତୀବ୍ର ଗତିରେ ମୋର ସକଳ କାରୁଣ୍ୟ ଆର୍ତ୍ତ ଚିତ୍କାର ଶୂନ୍ୟରେ ମିଳେଇ ଯାଉଚି । ଅଶୋକ ଆତୁର ହିଂସ୍ର ହୋଇ ମୋ ବାରଣକୁ ଦମନ କରିବା ପାଇଁ ପକେଟ ଭିତରୁ ଗୋଟାଏ ଚକ୍ ଚକ୍ ଚକ୍ ଛୁରୀ ଦେଖାଇ ମତେ ଭୟ ଦେଖାଉ ଥିବା ବେଳେ, ମୁଁ ଆଉ ଚେତନାବସ୍ଥାରେ ନଥିଲି ।

ଚେତନା ଫେରି ପାଇଲି ପରେ ଜାଣିଲି, ଗୋଟାଏ ଉଦ୍ଧୃଙ୍ଖଳ ବିପଦରୁ ମୁଁ ରକ୍ଷା ପାଇ ଯାଇଛି ଏଇ ରିକ୍‌ସାବାଲାଟିର ଅଶେଷ କୌଶଳଦ୍ୱାରେ । ସେ ପୁଲିସ୍ ଷ୍ଟେସନ ପାଖେ ରିକ୍‌ସା ରଖି ଖବର ଦେବାପାଇଁ ଦଉଡ଼ିବା ଦେଖି ଅଶୋକ ରିକ୍‌ସାରୁ ଖସି ଯାଇ କେଉଁଠି ଆତ୍ମଗୋପନ କରିଛି । ଅବଶ୍ୟ ସାଧାରଣ ରିକ୍‌ସା ଚାଳକ ପକ୍ଷେ, ଏ ଅସାଧାରଣ ଚିନ୍ତା, ଆଶା କରିବା ବୃଥା । ଯୋଗକୁ ଏଇ ଦୁ'ଗ୍ବୃର ମାସ ହେଲା ନୁଦ୍ରରକ୍ଷୀ ବାହିନୀରେ ଯୋଗ ଦେଇ ଏ ସାହସିକତା ଅର୍ଜନ କରି ପାରିଚି । ପୁଲିସ ଓ ରିକ୍‌ସାବାଲାଟିର ସାହାଯ୍ୟରେ ମୁଁ ଆସି ପହଞ୍ଚିଲି ବେଳକୁ ସମୟ କେତେ ହେବ, ଆଉ ଆନ୍ଦାଜ କରିବା ଅବସ୍ଥାରେ ନ ଥିଲି । ମୋ ପାଇଁ ସମୟର ପେଣ୍ଡୁଲମ୍ ଯେପରି ଅଚଳ ହୋଇ ଯାଇ ଥିଲା ଅନେକ ଆଗରୁ ।

କିନ୍ତୁ ତା' ପର ଦିନ ମୁଁ ଚରିତରିତ ଖାତରେ ହୋଷ୍ଟେଲରେ ପହଞ୍ଚନ୍ତେ ହୋଷ୍ଟେଲର ମାଲିକ ପୂର୍ବ ପରି ତାଙ୍କ ବିନମ୍ର ସ୍ୱରରେ ମତେ କହିଲେ, "ଆଉ ଜଣେ ନୂଆ କ୍ୟାଣ୍ଡିଡେଟ ଅଶୋକ ବାବୁ ଆସିଛନ୍ତି ଆପଣଙ୍କ କାମ ବୁଝାଇବାକୁ । ଆପଣଙ୍କ ପୂର୍ବ-ଦିନ ଗୁଡ଼ିକର ପାରିଶ୍ରମିକ ଏଇ ରଖନ୍ତୁ ।"

ଝଲକାଏ ରକ୍ତ ମୋ ମୁଣ୍ଡ ଭିତରୁ ଖସି ଆସିଲା ଯେମିତି··· । ଅଜଣା ଏକ ଉତ୍ତେଜନାରେ କମ୍ପି କମ୍ପି ଘରେ ଆସି ପହଞ୍ଚିଲି ବେଳକୁ, ସମସ୍ତ ଆଖିରେ ବିସ୍ମୟ । ଯିଏ ପ୍ରତିଦିନ ଘଣ୍ଟାକ ଯାଇ କାହିଁ, ଦୁ ଘଣ୍ଟା ଭିତରରେ ଘରକୁ ଫେରେ, ତା'ପକ୍ଷେ ଏତେ ଶୀଘ୍ର ଘରକୁ ଫେରି ଆସିବାଟା ଯେ କେବଳ ବିସ୍ମୟ ତା' ନୁହେଁ, ଅନେକ ବିପଦର କାରଣ ପରି ମନେ ହେଉଥିଲା । ସେ ବିସ୍ମୟର କୌତୁହଳ ଦମନ କରି ନ ପାରି ସମସ୍ତଙ୍କରେ ବେଣ୍ଡୁ ପଚାରି ଉଠିଲେ, "ତୁ ପଢ଼ାଇବାକୁ ଗଲୁନି କି ?"

ମୋ ଆଖିରେ ଟଳ୍ ଟଳ୍ ହୋଇ ଉଠୁଥିବା ମୁକ୍ତା ଭଳି ଲୁହର ଦୁଇ ବିନ୍ଦୁ ସେମାନଙ୍କୁ ସୂଚେଇ ଦେଉଥିଲା ଯେ, ମୁଁ ଆଉ କୌଣସି ଦିନ ବି ପଢ଼ାଇବାକୁ ଯିବିନି ।

❋

# ପୁନଶ୍ଚ ଅନ୍ଧାର

ପ୍ରଶାନ୍ତ ପଟ୍ଟନାୟକ

ସୁପ୍ରଭାଙ୍କ ଆଖିକୁ ଆଦୌ ନିଦ ଆସୁ ନଥିଲା । ବିଛଣାରେ ଏକାକୀ ଛଟପଟ ହେବା ଅପେକ୍ଷା ଅଗଣାର ଖୋଲାପବନରେ ବୁଲି ଆସିଲେ ହୁଏତ ଭଲ ଲାଗିପାରେ ବୋଲି ମନେକରି ସେ ଉଠି ଆଳସ ଭାଙ୍ଗି ସ୍ଲିପର ଦୁଇଟା ପାଦରେ ଗଳାଇ ଅଗଣାକୁ ଆସିଲେ ।

ଏତେ ବଡ଼ ବଙ୍ଗଳାଟା ଏକାକିନୀ ସୁପ୍ରଭାଙ୍କ ମନରେ କମିତି ଏକ ଭୟ ମିଶ୍ରିତ ରୋମାଞ୍ଚ ସୃଷ୍ଟି କରୁଥିଲା ଏବଂ ସ୍ୱାମୀ ଓ ବନ୍ଧୁମାନଙ୍କ ମହଲରେ ପ୍ରଚଣ୍ଡ ନାସ୍ତିକା ଓ ସାହସୀ ବୋଲି ବହୁବାର ଗର୍ବ କରୁଥିବା ଅଧ୍ୟାପିକା ସୁପ୍ରଭା, ଏପରି ଏକ ଭୀତିପ୍ରଦ ପରିବେଶରୁ ନିଜକୁ ମୁକ୍ତ କରିବା ଲାଗି ବିକଳ ହୋଇ ଉଠୁଥିଲେ ମଧ୍ୟ କୌଣସି ଉପାୟ ପାଉ ନ ଥିଲେ । ···ସ୍ୱାମୀ ସୁଦୀପ୍ତ ପୋଲିସ୍ ଡ଼ି ଆଇ.ଜି. ଏକ ଦୁର୍ଦ୍ଦାନ୍ତ ନକ୍ସଲପନ୍ଥୀ ଦଳକୁ ଦମନ କରିବା ଲାଗି କୋରାପୁଟ ଜଙ୍ଗଲ ଅଞ୍ଚଳରେ ସଦଳବଳେ କ୍ୟାମ୍ପ କରିଛନ୍ତି । ପୁଅ ସଂଜୀତ୍ ରାତି ଦଶଟା ବେଳେ ବାତଜ୍ୱରରେ କମ୍ପି କମ୍ପି ଘରକୁ ଫେରିଲେ । ଏତେ ରାତିରେ ଆଉ କାହାରିକୁ ନ ଡ଼କାଇ, ଏତେ ବିରାଟ ବଙ୍ଗଳାଟାରେ ଏକାକିନୀ ରାତି ଯାପନ କରି, ସ୍ୱାମୀଙ୍କ ନିକଟରେ ନିଜ ବାହାଦୁରୀର ପୁନଃ ପ୍ରତିଷ୍ଠା ଲାଗି ସୁପ୍ରଭା ସ୍ଥିର କରିଥିଲେ ।

ବ୍ରହ୍ମପୁରକୁ ସୁପ୍ରଭା ଓ ସୁଦୀପ୍ତଙ୍କର ବଦଳି ହୋଇ ଆସିବାର ମାତ୍ର ଛଅମାସ ହେବ । ସୁଦୀପ୍ତ ଡ଼ି.ଆଇ.ଜି. ପଦବୀକୁ ପ୍ରମୋସନ ପାଇ ବ୍ରହ୍ମପୁର ବଦଳି ହେବା ପରେ, ସୁପ୍ରଭା ଶିକ୍ଷା ବିଭାଗ କର୍ତ୍ତୃପକ୍ଷଙ୍କୁ ରିପ୍ରେଜେଣ୍ଟେସନ୍ କରି ସ୍ଥାନୀୟ ମହିଳା କଲେଜକୁ ବଦଳି ହୋଇ ଆସିଲେ ।

ଅଳ୍ପଦିନ ଭିତରେ ବ୍ରହ୍ମପୁର ସହରଟି ସୁପ୍ରଭାଙ୍କୁ ଆପଣାର କରି ନେଇ-ଥିଲା । ଛାତ୍ରୀ ଓ ଅଧ୍ୟାପିକା ମହଲରେ ସେ ବେଶ୍ ପ୍ରିୟ ହୋଇ ଉଠିଥିଲେ ।

ସୁପ୍ରଭା ଆସିବା ପରେ କଲେଜର ସାଂସ୍କୃତିକ କାର୍ଯ୍ୟକଳାପ ଯଥେଷ୍ଟ ପରିମାଣରେ ବଢିଯାଇଥିଲା ।

ଏବଂ ଜଣେ ଦୁର୍ଦ୍ଦାନ୍ତ ପୋଲିସ୍ ଅଫିସର ଭାବରେ, ଏହି ଅଞ୍ଚଳର ନକ୍ସଲପନ୍ଥୀ ଆନ୍ଦୋଳନକୁ ଦବାଇବାର ଦାୟିତ୍ୱ ନେଇ ଆସିଲେ ସୁଦୀପ୍ତ । ସୁଦୀପ୍ତଙ୍କ ମନରେ ପ୍ରଚଣ୍ଡ ଦୃଢତା, ସେ ଯଥାଶୀଘ୍ର ସମସ୍ତ ନକ୍ସଲପନ୍ଥୀମାନଙ୍କୁ ଦମନ କରି, ରାଷ୍ଟ୍ରପତି-ସ୍ୱର୍ଣ୍ଣପଦକ ପାଇବା ଲାଗି ହକ୍‌ଦାର ହେବେ ନିଶ୍ଚୟ ।

ଅଗଣାରେ ବୁଲି ବୁଲି ସୁପ୍ରଭାଙ୍କର ସ୍ୱାମୀଙ୍କ କଥା ମନେ ପଡ଼ିଲା । ପବନରେ ଭାସି ଆସୁଥିବା ମଲ୍ଲୀ, ଜୁଇ ଓ ହେନା ଫୁଲର ବାସ୍ନା ସୁପ୍ରଭାଙ୍କୁ ବାରମ୍ବାର ସୁଦୀପ୍ତଙ୍କ ଅନୁପସ୍ଥିତି ବିଷୟରେ ସଚେତନ କରାଇ ଦେଉଥିଲା । ଏମିତି ଏକ ପରିବେଶରେ ସେ ସୁଦୀପ୍ତଙ୍କୁ ଏକାକୀ ପାଇଥିଲେ ଅଜ୍ଞା ତାଙ୍କ କୋଳରେ ଶୋଇରହି ଅନେକ ଗେହ୍ଲା ହୋଇଥାଆନ୍ତେ । ସୁଦୀପ୍ତ ଭୀଷଣ ଆଣ୍ଟିରୋମାଣ୍ଟିକ । ସାହିତ୍ୟ ଅଧ୍ୟାପିକା ସୁପ୍ରଭା ଏକ ଅନୁକୂଳ ପରିବେଶରେ ଅକସ୍ମାତ୍ ପ୍ରଚଣ୍ଡ ରୋମାଣ୍ଟିକ୍ ହୋଇ ଉଠିବା ସମୟରେ ସୁଦୀପ୍ତଙ୍କ ମୁଣ୍ଡ ଭିତରେ କେଉଁ ଦୁର୍ଦ୍ଦାନ୍ତ ଡକାୟତ ବା ନକ୍ସାଲପନ୍ଥୀ ଅସ୍ଥାନ ଜମାଇ ବସିଥା'ଏ... କିନ୍ତୁ ଆଜିର ପରିବେଶ ନିଶ୍ଚିତ ଭାବରେ ତାଙ୍କ ଦେହ, ମନକୁ ରୋମାନ୍ସର ପରାଗ ରେଣୁରେ ଓଦା କରି ଦେଇଥାଆନ୍ତା ।

ସୁପ୍ରଭା ହଠାତ୍ ଚମକି ପଡ଼ିଲେ । ସୁଦୀପ୍ତ ବର୍ତ୍ତମାନ କେଉଁ ନିଘଞ୍ଚ ଅରଣ୍ୟରେ ନକ୍ସଲପନ୍ଥୀମାନଙ୍କ ପଛରେ ଦୌଡ଼ୁଥିବେ ଅଥବା ସେମାନଙ୍କ ସହ ଗୁଳି ବିନିମୟ କରୁଥିବେ । ମାତ୍ର ସୁପ୍ରଭା ଏଠି ଆରାମରେ ଜୁଇ, ହେନା ଫୁଲର ବାସ୍ନା ଆଘ୍ରାଣ କରିବାରେ ବ୍ୟସ୍ତ ।

କିଛି ସମୟ ଅଗଣାରେ ପଦଚାରଣ କରିବା ପରେ, ଠିକ୍ ଅଗଣା ମଝିରେ ପଡ଼ିଥିବା ଗାର୍ଡେନ୍ ଚେୟାରଟି ଉପରେ ବସିଲେ ସୁପ୍ରଭା । ତାଙ୍କର ମନେ ପଡ଼ିଲା ସୁଦୀପ୍ତଙ୍କ କଥା । ସେ କହୁଥିଲେ, ସେଇ ନକ୍ସଲପନ୍ଥୀମାନଙ୍କର ଦୁର୍ଦ୍ଧର୍ଷ ନେତା ଅଜୟଦାସଙ୍କୁ ନ ଧରିବା ପର୍ଯ୍ୟନ୍ତ ବା ଗୁଳିକରି ନ ମାରିବା ପର୍ଯ୍ୟନ୍ତ ସେ ବିଶ୍ରାମ ନେବେନି ।...ସେତେବେଳେ ସୁପ୍ରଭାଙ୍କ ମନ ଚହଲିଉଠି-ଥିଲା । ତାଙ୍କର ଏକଦା ଏକାନ୍ତ ଅନ୍ତରଙ୍ଗ ଅଜୟଦାସଙ୍କ ବିରୁଦ୍ଧରେ ସ୍ୱାମୀ

ବନ୍ଧୁବାନ୍ଧବ ବିଦ୍ରୋହ ଗାଉଣି ନଲେ ବି ସେ ପ୍ରତିବାଦ କରିପାରୁ ନ ଥିଲେ । …ଅଜୟଙ୍କୁ ନେଇ ସୁପ୍ରଭା କେତେ ସ୍ୱପ୍ନ ଦେଖୁଥିଲେ, କିନ୍ତୁ ସବୁ କିଛିକୁ ଚୂର୍ମାର କରି ଅଜୟ ଅସ୍ୱାଭାବିକ ଭାବରେ ନକ୍ସଲପନ୍ଥୀ ଆନ୍ଦୋଳନରେ ଯୋଗ-ଦେଲେ । ସେଇ ଦିନଠୁ ତାଙ୍କ ସହିତ ଆଉ ଦେଖା ହୋଇନି । ସୁପ୍ରଭା ପଢାସାରି ଚାକିରି କରି ବାହା ହୋଇ ମାଆ ହେଲଣି ।

ସୁପ୍ରଭା ମନେ ମନେ କଳ୍ପନା କଲେ ଏକ ନିଘଞ୍ଚ ଅରଣ୍ୟ ! ତା'ରି ଭିତରେ ଏକପକ୍ଷରେ ଅଜୟଦାସଙ୍କ ଦୁର୍ଦ୍ଧାନ୍ତ ନକ୍ସଲପନ୍ଥୀ ଦଳ, ଅପର ପକ୍ଷରେ ସୁଦୀପ୍ତଙ୍କ ପୋଲିସ୍ ବାହିନୀ । ଉଭୟପକ୍ଷ ବନ୍ଧୁ ଆଧୁନିକ ମାରଣାସ୍ତ୍ରରେ ସଜ୍ଜିତ । ଉଭୟଙ୍କ ମଧ୍ୟରେ ଗୁଳି ବିନିମୟ ଆରମ୍ଭ ହୋଇଛି ଏବଂ ଗୁଳି ମାଡରେ ଟଳି ପଡ଼ୁଛନ୍ତି ଅଜୟଦାସ ... ନା ନା ସୁଦୀପ୍ତ ... ନା ...ଅଜୟ ନା .. ସୁଦୀପ୍ତ ନା ··· ନା ···

ସୁପ୍ରଭାଙ୍କ ମୁଣ୍ଡ ଭିତରଟା ଗୋଳମାଳିଆ ହୋଇଗଲା । ଗୁଳି ବିନିମୟରେ ଅଜୟଦାସ ବା ସୁଦୀପ୍ତ କିଏ ପ୍ରାଣବଳି ଦେବେ, ସେ କଥା ଭାବିବା ବେଳେ ତାଙ୍କ ଦେହ ଶୀତେଇ ଉଠିଲା । ସୁଦୀପ୍ତ ତାଙ୍କର ସ୍ୱାମୀ, ଗୌରବ । ଜୀବନର ସର୍ବସ୍ୱ ।

ଏବଂ ଅଜୟ ଦାସ !·· ଏକଦା ସୁପ୍ରଭାଙ୍କର ସବୁ କିଛି । ସେ ସୁପ୍ରଭାଙ୍କର ଦେହଠାରୁ ଅନେକ ଦୂରକୁ ଚାଲିଯାଇଥିଲେ ମଧ୍ୟ, ତାଙ୍କ ମନ ଭିତରେ ଘନିଷ୍ଠ ହୋଇ ରହିଥିଲେ, ଏବଂ ସୁପ୍ରଭାଙ୍କ ହୃଦୟରେ ସର୍ବଦା ଆସ୍ଥାନ ଜମାଇ ବସିଥିଲେ । ଅଜୟଦାସଙ୍କଠାରୁ ସୁପ୍ରଭା ଯେତିକି ସ୍ନେହ, ପ୍ରେମ ପାଇଥିଲେ, ତା'ର କାଣିଚାଏ ସୁଦ୍ଧା, ଦୀର୍ଘ ବିବାହିତ ଜୀବନରେ ସେ ସୁଦୀପ୍ତଙ୍କଠାରୁ ପାଇପାରି ନାହାନ୍ତି ।

ସୁଦୀପ୍ତ ନିଜର ସ୍ୱାର୍ଥ ପାଇଁ, ଚାକିରିରେ ପ୍ରମୋସନ ପାଇଁ ଅଜୟଙ୍କ ପିଛା ଧରିଛନ୍ତି । ନକ୍ସଲପନ୍ଥୀ ଆନ୍ଦୋଳନ ଦମନ କରିବା ଲାଗି ଉଦ୍ୟମ କରୁଛନ୍ତି । ....କିନ୍ତୁ ଅଜୟ !··· ଦେଶର, ଅଶିକ୍ଷିତ ଅତ୍ୟାଚାରିତ ଆଦିବାସୀ, ହରିଜନ, କ୍ଷେତ ମଜୁରିଆଙ୍କୁ ଏକଜୁଟ କରାଉଛନ୍ତି ସେମାନଙ୍କ ସମ୍ବିଧାନସମ୍ମତ ନ୍ୟାଯ୍ୟ ଦାବୀ ହାସଲ କରିବା ପାଇଁ । ମଣିଷ ଭଳି ବଞ୍ଚି ରହିବାର ଅଧିକାର ଜାହିର କରିବା ପାଇଁ ।···

ସୁଦୀପ୍ତ କହନ୍ତି; ଅଜୟ ଗୋଟାଏ ହତ୍ୟାକାରୀ । ଲୁଣ୍ଠନକାରୀ, ସେ ଅନେକ ଜମିଦାର ଓ ସାହୁକାରଙ୍କ ମୁଣ୍ଡ କାଟିଛନ୍ତି ଓ ସେମାନଙ୍କର ସମ୍ପତ୍ତି ଲୁଣ୍ଠନ

କରିଛନ୍ତି । ଅନେକ ଝିଅ ବୋହୂଙ୍କୁ ରେପ୍ କରିବନ୍ତି । ତାଙ୍କ ନାମରେ ଗଦା ଗଦା ଅଭିଯୋଗ ।···ସମସ୍ତ ସମ୍ବାଦପତ୍ର ଓ ରେଡ଼ିଓ, ଅଜୟଦାସଙ୍କ ଅପକର୍ମର ଇତିହାସରେ ଶତମୁଖ ହୋଇ ଉଠିଛନ୍ତି । ତାଙ୍କୁ ଜୀବିତ ବା ମୃତାବସ୍ଥାରେ ଧରାଇଦେଲେ ଏକ ଲକ୍ଷ ଟଙ୍କା ପୁରସ୍କାର ମିଳିବ ବୋଲି ସରକାର ଘୋଷଣା କରି ସାରିଛନ୍ତି । ତଥାପି ଅଜୟ, ଅଜେୟ ହୋଇ ରହିଛନ୍ତି ।·· ସୁଦୀପ୍ତ ତାଙ୍କୁ ଯଦି ଗିରଫ କରିଦେବେ ବା ମାରିଦେବେ, ତେବେ ସେ ହେବେ ଏହି ଲକ୍ଷେ-ଟଙ୍କିଆ ପୁରସ୍କାରର ମାଲିକ । ତା ଛଡ଼ା ପୋଲିସ ବିଭାଗରେ କେତେ ସୁନାମ, ·· ପ୍ରମୋସନ୍··· କେତେ କ'ଣ....

ଅଜୟଙ୍କ ବିଷୟରେ ସୁଦୀପ୍ତ ବହୁବାର ସୁପ୍ରଭାଙ୍କୁ କହିଥାଆନ୍ତି । ତାଙ୍କର ଲୋମହର୍ଷଣକାରୀ ହତ୍ୟାକାଣ୍ଡ ଓ ଅପାପ୍ତବୟସ୍କା ବାଳିକା ଠାରୁ ଆରମ୍ଭକରି, ବହୁ ଗରିବ ଆଦିବାସୀ ମହିଳାଙ୍କ ପ୍ରତି ପାଶବିକ ଅତ୍ୟାଚାର କରିଥିବା ଘଟଣାର ବିବରଣୀ ମଧ୍ୟ ବର୍ଣ୍ଣନା କରିଥାନ୍ତି ।·· ସୁଦୀପ୍ତଙ୍କ ଭାଷାରେ ଅଜୟ ଗୋଟାଏ ହାର୍ଡକୋର କ୍ରିମିନାଲ । · ସୁପ୍ରଭା ସବୁ ଶୁଣନ୍ତି; କିନ୍ତୁ ପ୍ରତିବାଦ କରିପାରନ୍ତିନି । କାଳେ ସୁଦୀପ୍ତି ତାଙ୍କୁ ଭୁଲ ବୁଝିବେ ।

କିନ୍ତୁ ସୁଦୀପ୍ତ କେବେ ଅଜୟଙ୍କୁ ହତ୍ୟାକାରୀ ଭାବରେ ଚିତ୍ରଣ କରୁଥିବା ସମୟରେ ସୁପ୍ରଭାଙ୍କ ମନଭିତରକୁ ପଶି ଆସନ୍ତି ଏକ ସରଳ, ନିରୀହ; ନିଷ୍କପଟ ଅଜୟ । ପାଞ୍ଚଫୁଟ ଛଅଇଞ୍ଚ ଉଚ୍ଚତା ଓ ସାଧାରଣ ସ୍ୱାସ୍ଥ୍ୟର ଚେହେରା । ଦୁଇଟା ଉଜ୍ଜ୍ୱଳ ଆଖି ଓ ସବଦା ମେଞ୍ଚାଏ ହସ ଲାଗିରହିଥିବା ତାଙ୍କର ମୋଟା ଓଠ ଦୁଇଟି । ଯାହାର ସ୍ପର୍ଶ ପାଇଁ ସୁପ୍ରଭା ବହୁବାର ବିକଳ ହୋଇ ଉଠିଥିଲେ । ....ସେହି ଅଜୟ ଯେ ହତ୍ୟାକାରୀ ଓ ନାରୀଧର୍ଷଣକାରୀ ହୋଇପାରନ୍ତି ଏ କଥା ସୁପ୍ରଭା କଳ୍ପନା ସୁଦ୍ଧା କରି ପାରନ୍ତିନି ।

କିନ୍ତୁ ସୁପ୍ରଭା ଦ୍ୱନ୍ଦ୍ୱରେ ପଡ଼ନ୍ତି । ଏତେ ଗୁଡ଼ାଏ ପୋଲିସ୍ ରିପୋର୍ଟ କଣ ମିଛ ?... ଅଜୟଙ୍କୁ ବର୍ତ୍ତମାନ ପ୍ରାୟ ଚାଳିଶ ବର୍ଷ ପାଖାପାଖି ହେବ । ଏତେ ଦିନ ପର୍ଯ୍ୟନ୍ତ ସେ ଅବିବାହିତ । ଦେହର କ୍ଷୁଧା ମେଣ୍ଟାଇବା ପାଇଁ ସେ ଯେ କାହାରିକୁ ଧର୍ଷଣ କରୁନଥିବେ ଏକଥା କ'ଣ ଜୋର୍ କରି କହିହେବ ?.. ଯେଉଁ ଅଜୟ ବହୁବାର ସୁପ୍ରଭାଙ୍କର ଲୋଭନୀୟ ଦେହକୁ ଉପଭୋଗ କରିବାଲାଗି ପ୍ରତ୍ୟାଖ୍ୟାନ କରି ଆସିଥିଲେ, ସେ କ'ଣ ଏତେ ନୀଚ ହୋଇ ପାରୁଥିବେ ? ·· ସୁପ୍ରଭାଙ୍କ ଚିନ୍ତାଧାରା ଅଡୁଆ ସୂତା ଖିଅ ପରି ଗୋଳମାଳିଆ ହୋଇଯାଏ ।

ଆଜିର ଏହି ବିନିଦ୍ର ରଜନୀରେ ଅଜୟ ଓ ସୁଦୀପ୍ତଙ୍କ କଥା ବାରମ୍ବାର ସୁପ୍ରଭାଙ୍କ ମନକୁ ଆଚ୍ଛନ୍ନ କରି ରଖୁଥିଲା ।

ସୁପ୍ରଭା ହାତଘଣ୍ଟାକୁ ଚାହିଁଲେ । ରାତି ଗୋଟାଏ ବାଜିଲା । ଏଥର ବିଛଣାରେ ପଡ଼ି ଶୋଇବା ଲାଗି ଉଦ୍ୟମ କରାଯାଇପାରେ ।

ସୁପ୍ରଭା ଉଠି ଠିଆହେଲେ ।

ହଠାତ୍ ସାମ୍ନା ପାଚେରୀ ଡେଇଁ ଅଗଣା ଭିତରକୁ ଆସିବା ଲାଗି ଉଦ୍ୟତ କରୁଛି ।...କ'ଣ ଘଟୁଛି ଜାଣିବା ଲାଗି ଉଦ୍ୟମ କରିବା ପୂର୍ବରୁ ସାଧାରଣ ସ୍ୱାସ୍ଥ୍ୟ ସମ୍ପନ୍ନ ଶ୍ମଶ୍ରୁ ବର୍ଜିତ ଜଣେ ପୁରୁଷ ଅଗଣା ଭିତରକୁ ଡେଇଁଲା ଏବଂ ସୁପ୍ରଭା ଭୟରେ ଚିତ୍କାର କରିବା ପୂର୍ବରୁ ବାଁ ହାତରେ ତାଙ୍କ ପାଟିକୁ ଚାପିଧରି କହିଲା, "ପାଟିତୁଣ୍ଡ କରନ୍ତୁ ନା । ମୁଁ ଆପଣଙ୍କର କିଛି କ୍ଷତି କରିବି ନା । ଅଳ୍ପ ସମୟରେ ଚାଲିଯିବି ।"

ସେ ଏକ ନିଃଶ୍ୱାସରେ ଏତିକ କହି ସାରି ସୁପ୍ରଭାଙ୍କ ପାଟିରୁ ହାତ ଖୋଲିବା ପୂର୍ବରୁ ଅନେକ ଗୁଡ଼ାଏ ଭାରୀ ଯୋତାର ଧାଇଁବା ଶବ୍ଦ ଓ ହୁଇସିଲର କାନଫଟା ଚିତ୍କାର ଶୁଣାଗଲା ।

ସୁପ୍ରଭା ଭୟରେ ଠକ୍ ଠକ୍ ଥରୁଥିଲେ ।

ଏଥର ସେଇ ଆଗନ୍ତୁକ କହିଲା, "ଆପଣ ବ୍ୟସ୍ତ ହୁଅନ୍ତୁ ନା । ମତେ ବିଶ୍ୱାସ କରନ୍ତୁ ମୁଁ ଚୋର ବା ଡକାୟତ ନୁହେଁ । ପୋଲିସ୍ କିନ୍ତୁ ମୋ'ର ପିଛା ଧରିଛନ୍ତି । ସେମାନେ ଚାଲିଯିବା ପରେ ମୁଁ ଚାଲିଯିବି ।"

ସୁପ୍ରଭା ଝାପ୍‌ସା ଆଲୁଅରେ ଆଗନ୍ତୁକ ମୁହଁକୁ ଚାହିଁଲେ ।

ସେତେବେଳକୁ ସେ ପାଚେରୀକୁ ପିଠି ଆଉଜେଇ ଠିଆ ହୋଇଥିଲା ।

ସୁପ୍ରଭା ହଠାତ୍ ଚମକି ଉଠିଲେ । ତାଙ୍କ ସାମ୍ନାରେ ଯେଉଁ ଲୋକଟି ଠିଆ ହୋଇଛି, ସେ ଯେ ଅଜୟ ଦାସ । ତାଙ୍କର ଏକଦା ଏକାନ୍ତ ଓ ଅତି ଆପଣାର ଅଜୟ ଦାସ । ଦୁର୍ଦ୍ଦାନ୍ତ ନକ୍‌ସଲପନ୍ଥୀ ନେତା ଅଜୟ ଦାସ ।

ସୁପ୍ରଭା ଦୀର୍ଘ ପନ୍ଦର ବର୍ଷର ବ୍ୟବଧାନ ପରେ ଅଜୟଙ୍କୁ ଦେଖି ଚିହ୍ନି ପାରିଲେ ମଧ୍ୟ, ଆଖିର ଭ୍ରମ ହୋଇ ପାରିଥାଏ ବୋଲି ମନେକରି ପ୍ରଶ୍ନ କଲେ, "ଆପଣ ଅଜୟ ଦାସ ?"

"ହଁ" । ଶ୍ରେଣ୍ଟ ଉତ୍ତରଟିଏ ଦେଇ ନୀରବ ରହିଲା ଆଗନ୍ତୁକ ।

ସୁପ୍ରଭାଙ୍କର ମନ ହଠାତ୍ ପୂରିଉଠିଲା ଯେମିତି । ସେ ଅନୁଭବ କଲେ ସେ ଯେମିତି ଅକସ୍ମାତ୍ ହେଇ କଲେଜ ପଢା ଦିନକୁ ଫେରି ଯାଇଛନ୍ତି ଓ ହଷ୍ଟେଲ ଗେଟ୍ ପାଖରେ ଦୀର୍ଘ ସମୟ ଧରି ଅଜୟଙ୍କୁ ଅପେକ୍ଷା କରିବାପରେ ତାଙ୍କୁ ନିକଟରେ ପାଇଛନ୍ତି ।

ସେ ଏଥର ଆଗନ୍ତୁକଙ୍କର ଅତି ନିକଟକୁ ଯାଇ କହିଲେ "ମତେ ଚିହ୍ନି ପାରୁନ ଅଜୟ ? ମୁଁ ପରା ସୁପ୍ରଭା ।"

ଅଜୟ ତୀକ୍ଷ୍ଣ ଆଖିରେ ସୁପ୍ରଭାଙ୍କୁ ଚାହିଁଲେ ଓ ତଳ ଓଠକୁ କାମୁଡ଼ି ନୀରବ ରହିଲେ ।

ସୁପ୍ରଭା କହିଲେ, "ତୁମେ ଘର ଭିତରକୁ ଆସ ଅଜୟ । ବାହାରେ କେତେ ସମୟ ଠିଆହୋଇ ରହିବ ?"

ଅଜୟ ସେମିତି ନୀରବରେ ଠିଆହୋଇ ରହିଲେ ।

ସୁପ୍ରଭା ଏଥର ଅଜୟଙ୍କ ହାତଧରି ଘର ଭିତରକୁ ନେଲେ ।

ସୁପ୍ରଭାଙ୍କ ବେଡ୍‌ରୁମ୍‌କୁ ଲାଗି ଗେଷ୍ଟରୁମ୍ ଏବଂ ଉଭୟ କୋଠରୀ ଏକ କବାଟଦ୍ୱାରା ସଂଲଗ୍ନ ।

ସୁପ୍ରଭା ଅଜୟଙ୍କୁ ଗେଷ୍ଟ ରୁମ୍‌କୁ ନେଇଗଲେ ଓ ବିଶ୍ରାମ କରିବା ଲାଗି ଅନୁରୋଧ କଲେ ।

ଦୀର୍ଘ ପନ୍ଦର ବର୍ଷର ବ୍ୟବଧାନ ପରେ ଦେଖା । ସୁପ୍ରଭାଙ୍କର ଇଚ୍ଛା ହେଉଥିଲା ଅଜୟଙ୍କ ସହ ଗପି ଗପି ସାରା ରାତି ବିତାଇ ଦେବେ । ଏବଂ ତାଙ୍କୁ ଖୋଲି ଖୋଲି ଖାବରେ ପଚାରିବେ ଯେ, ସେ ଏତେ ଗୁଡ଼ାଏ ହତ୍ୟାକାଣ୍ଡ ଓ

ନାରୀଧର୍ମ୍ମଣ କରି ଗ୍ଭଲଛନ୍ତି କାହିଁକି ? ଅଥବା ପୋଲିସ୍ କର୍ତ୍ତୃପକ୍ଷ ତାଙ୍କ ବିରୁଦ୍ଧରେ ଏ ସମସ୍ତ ମିଥ୍ୟା ଅଭିଯୋଗ କାହିଁକି ଯୋଡ଼ିଛନ୍ତି ?

ମାତ୍ର ସୁପ୍ରଭା କିଛି ପଗ୍ଭରି ପାରି ନ ଥିଲେ । ସେ ଦେଖିଲେ ଅଜୟ ଯଥେଷ୍ଟ କ୍ଳାନ୍ତ ଜଣା ପଡ଼ୁଛନ୍ତି । ତାଙ୍କ ଆଖିରେ ଅନେକ ରାତିର ନିଦ ଭରି ରହିଛି ଯେମିତି । ତେଣୁ ନିଶ୍ଚିନ୍ତରେ ଓ ନିରାପଦରେ ସେ କେଇଟି ଘଣ୍ଟା ଶୋଇ ରହିବା ଉଚିତ୍ ମନେକରି ସୁପ୍ରଭା ସେଠାରୁ ନିଜ ବେଡ୍‌ରୁମ୍‌କୁ ଗ୍ଭଲିଗଲେ । ମାତ୍ର ଉଭୟ କୋଠରୀକୁ ସଂଲଗ୍ନ କରୁଥିବା ମଝି ଦରଜାଟିକୁ ବନ୍ଦ କଲେ ନାହିଁ ।

ଶୟନ କକ୍ଷର ନୀଳ ଆଲୋକରେ ଦର୍ପଣ ସାମ୍ନାରେ ଠିଆହୋଇ ସୁପ୍ରଭା ନିଜକୁ ଗ୍ଭହିଁଲେ । କଲେଜ ପଢ଼ାଦିନ ଓ ଆଜି ମଧ୍ୟରେ ତାଙ୍କ ଚେହେରାରେ ବିଶେଷ କିଛି ପରିବର୍ତ୍ତନ ହୋଇନି । ସେ ନିଜର ଯୌବନକୁ ବାନ୍ଧି ରଖିବା ଲାଗି ଅନେକାଂଶରେ ସଫଳ ହୋଇଛନ୍ତି । ସ୍ୱାମୀ ସୁଦୀପ୍ତ ସବୁବେଳେ ସୁପ୍ରଭାଙ୍କୁ ପରାମର୍ଶ ଦେଇଥାଆନ୍ତି, ନିଜର ଯୌବନକୁ ଅତୁଟ ରଖିବା ଲାଗି । ତା' ନହେଲେ କ୍ଲବ ବା ପାର୍ଟିରେ ସୁଦୀପ୍ତଙ୍କର ସମ୍ମାନ ରହିବ କେଉଁଠି ? ଏଇ ଦେହଟା ପ୍ରତି ସୁଦୀପ୍ତଙ୍କର ପ୍ରଚଣ୍ଡ ଲୋଭ ସତରେ ।

କିନ୍ତୁ ଅଜୟ ତ ଦିନେ ହେଲେ ଏଇ ଦେହଟା ପ୍ରତି ଲୋଲୁପକ୍ତ ନ ଥିଲେ । କଲେଜରେ ପଢ଼ିବାବେଳେ ଅଜୟଙ୍କୁ ସୁପ୍ରଭା ଭଲପାଇ ବସିଥିଲେ । ସୁପ୍ରଭା ବି. ଏ. ପଢ଼ିବା ବେଳକୁ, ଅଜୟଙ୍କର ଏମ୍. ଏ. ଫାଇନାଲ ଇୟର ।

ଅଜୟ ମଧ୍ୟ ସୁପ୍ରଭାଙ୍କୁ ମର୍ମ୍ମାନ୍ତ ଭଲ ପାଇ ବସିଥିଲେ । ମହିଳା ହଷ୍ଟେଲର ଭିଜିଟର ଲାଉଞ୍ଜରେ ସେ ସୁପ୍ରଭାଙ୍କ ସହ ଘଣ୍ଟା ଘଣ୍ଟା ଗପି ବିତାଇ ଦେଇଥିଲେ । କିନ୍ତୁ ସୁପ୍ରଭାଙ୍କ ଦେହ ପ୍ରତି ତାଙ୍କର ତ କେବେ ଲୋଭ ଥିବାର ସେ ଲକ୍ଷ୍ୟ କରି ନ ଥିଲେ । ...... ସେଇ ଅଜୟ ବର୍ତ୍ତମାନ ଆଦିବାସୀ, ହରିଜନ ପରିବାରର ଗରୀବ ଯୁବତୀମାନଙ୍କୁ ରେପ୍ କରୁଛନ୍ତି କିପରି ? କ'ଣ ଏ ଭିତରେ ତାଙ୍କର ଏତେ ଅଧୋପତନ ହୋଇଛି ?

ଏବଂ ସେଇ ହତ୍ୟାକାରୀ ଓ ନାରୀ ଧର୍ଷଣକାରୀ ଅଜୟ ଦାସଙ୍କୁ ନିରାପଦରେ ଆଶ୍ରୟ ଦେଇଛନ୍ତି ପୋଲିସ୍ ଡି. ଆଇ. ଜି. ସାହେବଙ୍କ ଧର୍ମପତ୍ନୀ ସୁପ୍ରଭା !

ସୁପ୍ରଭାଙ୍କ ଦେହ ଶୀତେଇ ଉଠିଲା । ଅଜୟ ଯଦି ଦୁର୍ଦ୍ଦାନ୍ତ କାମନାର ବଶବର୍ତ୍ତୀ ହୋଇ ଓ ତାଙ୍କୁ ଏକାକିନୀ ରହିବାର ସୁଯୋଗ ନେଇ ସୁପ୍ରଭାଙ୍କୁ ରେପ୍ କରିବା ପାଇଁ ଉଦ୍ୟମ କରନ୍ତି, ତେବେ ସେ କ'ଣ କରିବେ ?

ଭୟରେ ଠକ୍ ଠକ୍ ଥରିବାକୁ ଆରମ୍ଭ କଲା ସୁପ୍ରଭାଙ୍କର ସମଗ୍ର ଶରୀର । ନା……ସେ ଆଉ ଠିଆହୋଇ ରହି ପାରିବେନି । ଏଥର ସେ ବିଛଣା ଉପରେ ଲେଟି ପଡ଼ିଲେ । ଏକ ଅଗ୍ନନକ ବାତ୍ୟାରେ ତାଙ୍କ ମୁଣ୍ଡର ସମସ୍ତ ସ୍ନାୟୁତନ୍ତ୍ରୀ ଗୁଡ଼ାକ ଛିଣ୍ଡିବାକୁ ଆରମ୍ଭ କଲା ଯେମିତି ।

ଅଜୟଙ୍କ ଭଳି ଗୋଟାଏ ଦୁର୍ଦ୍ଧର୍ଷ ହତ୍ୟାକାରୀ ଓ ଧର୍ଷଣକାରୀଙ୍କୁ ରାତି ଅଧରେ ଘରେ ଆଶ୍ରୟ ଦେଇ ସେ କେତେ ଭୁଲ୍ କରି ନାହାନ୍ତି ସତରେ ! ଯଦି ସୁଦୀପ୍ତ କୌଣସି ଉପାୟରେ ଏକଥା ଜାଣିବେ, ତେବେ ତାଙ୍କ ଅବସ୍ଥା କ'ଣ ହବ ? ……ବାହାରର ଲୋକମାନେ ଯଦି ଜାଣିବେ. ତେବେ ଲାଜରେ ସୁପ୍ରଭା କ'ଣ କାହାରିକୁ ମୁହଁ ଦେଖାଇ ପାରିବେ ? ବରଂ ସୁଇସାଇଡ୍ କରିବେ ।

ଏବଂ ଯଦି ଅଜୟ ତାଙ୍କୁ ରେପ୍ କରନ୍ତି ଓ ସେ ସମ୍ବାଦ ପ୍ରଚାରିତ ହୁଏ ତେବେ ?………?…ନା……ନା ସେ ତା' କରିଇ ଦେବେନି । ବରଂ ଅଜୟଙ୍କୁ ହତ୍ୟାକରି ନିଜର ସମ୍ମାନ ରଖିବେ ଅଥବା ସୁଇସାଇଡ୍ କରିବେ ।

ସୁପ୍ରଭା ତକିଆତଳେ ହାତ ମାରିଲେ । ସ୍ୱାମୀ ସୁଦୀପ୍ତ, ନିରାପତ୍ତା ପାଇଁ ସବୁବେଳେ ତକିଆତଳେ ରାମପୁରିଆ ଛୁରୀଟିଏ ରଖି ଥାଆନ୍ତି । ସେଇଟି ଯଥା ସ୍ଥାନରେ ରହିଛି ।…… ଯଦି ଅଜୟ ତାଙ୍କୁ ଆକ୍ରମଣ କରନ୍ତି, ତେବେ ସେ ନିଶ୍ଚିତ ଭାବରେ ଏଇ ତୀକ୍ଷ୍ଣ ଛୁରୀ ଭୁଷି ତାଙ୍କୁ ହତ୍ୟା କରିବେ ଏବଂ ଏକଲକ୍ଷ ଟଙ୍କା ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ତାଙ୍କ ସାହସିକତାର ଇତିହାସ ଲାଗି ତାଙ୍କର ସ୍ୱାମୀ ଗୌରବାନ୍ୱିତ ହେବେ ।

ସୁପ୍ରଭାଙ୍କ ମୁଣ୍ଡ ଚକ୍କର କାଟିବାକୁ ଲାଗିଲା । ସେ କ'ଣ ସତରେ ଅଜୟଙ୍କୁ ହତ୍ୟା କରି ପାରିବେ ? ଯେଉଁ ଅଜୟଙ୍କ ସହ ନିରୋଳାରେ କେଇଟି ମୁହୂର୍ତ୍ତ କଟାଇବା ପାଇଁ ବ୍ୟାକୁଳ ହୋଇ, ସୁପ୍ରଭା ତାଙ୍କ ସହ ଯାଇଥିଲେ ଏକ ନିର୍ଜନ ଡାକବଙ୍ଗଳାକୁ, ଏବଂ ସେଠାରେ ଅଜୟଙ୍କୁ କହିଥିଲେ, "ଅଜୟ ମୋ'ର

ଗୋଟିଏ ଅନୁରୋଧ ତମେ ରଖି ପାରିବ ?··· ··· ମୋ' ରାଣ ଖାଅ ····· ମୋ' ଦେହ ଛୁଇଁ ତମେ କଥା ଦିଅ······ତ ମାର୍କସ୍, ଆଞ୍ଜେଲସ୍, ଷ୍ଟାଲିନ୍, ଲେନିନ୍‌ଙ୍କ ରାଣ ଦେଇ ମତେ କଥା ଦିଅ ।' ଅନୁରୋଧ ରଖିବ ।"

ଅଜୟ କଥା ଦେଇଥିଲେ "ନିଶ୍ଚୟ ରଖିବି" । ତାଙ୍କ ସ୍ୱରରେ ଥିଲା ପ୍ରଚଣ୍ଡ ଦୃଢ଼ତା ।

ସୁପ୍ରଭା କହିଥିଲେ, "ଯଦି କୌଣସି ପରିସ୍ଥିତି ଯୋଗୁଁ ମୁଁ ତୁମକୁ ବିବାହ କରି ନ ପାରେ ଓ ମୋ'ର ବାପା, ମୋ ମୋତେ ଅନ୍ୟତ୍ର ବାହା କରିଦିଅନ୍ତି, ତେବେ ତମେ ମତେ ଗୋଟିଏ ଜିନିଷ ·····ତା' ହେଉଛି ତମଠାରୁ ମୋର ପୁଅଟିଏ ।······ମୋ ବୁଦ୍ଧି ଉପରେ ମୋର ଯଥେଷ୍ଟ ବିଶ୍ୱାସ ଅଛି । ମୁଁ ମୋ ସ୍ୱାମୀଙ୍କୁ ଅନାୟାସରେ ଠକିଦେଇ ତମକୁ ମୋ ଦେହ ଦେଇ ପାରିବି ଏବଂ ତମଠାରୁ ମୋ'ର ପୁଅଟିଏ ପାଇଲେ, ତାକୁଇ ପାଇ ମୁଁ ଯାବଜ୍ଜୀବନ ତମର ସାନ୍ନିଧ୍ୟ ପାଇବାର ସୁଖ ଅନୁଭବ କରି ପାରିବି । ତମ ଓ ମୋର ସେଇ ପୁଅଟି ହେବ ଠିକ୍ ତମରି ପରି ସେମିତି ଉଜ୍ଜ୍ୱଳ ଆଖି, ମୋଟା ଓଠ, ଏମିତିକି ତମର ଦେହର ପ୍ରତିଟି ଦାଗ ଓ ··· ାଜାଇ ତା' ଦେହରେ ଥିବ······ । ଏତିକି ମତେ ଦେଇ ପାରିବ ଅଜୟ ?"

ସୁପ୍ରଭାଙ୍କର ଏଇ କରୁଣ ମିନତି ଶୁଣି ଅଜୟ ସେଦିନ କହିଥିଲେ, "ତମେ ଏତେ ମାତ୍ରାରେ କାହିଁକି ଭାବପ୍ରବଣ ହୋଇ ପଡୁଛ ?"

ଅଜୟଙ୍କଠାରୁ କୌଣସି ନିର୍ଦ୍ଦିଷ୍ଟ ପ୍ର ···ତି ନ ପାଇ ସୁପ୍ରଭା ସେଦିନ ତାଙ୍କ ଛାତିରେ ମଥାରଖି ଅନେକ କାନ୍ଦିଥିଲେ ଏବଂ ଅଜୟ ସୁପ୍ରଭାଙ୍କ ଆଖିରେ ଚୁମା ଦେଇ ସେଇ ଲୁହ ଗୁଡ଼ାକ ବୋଧେ ପିଇ ···ଥିଲେ ।······କି ଚମତ୍କାର ସେ ଓଠର ସ୍ପର୍ଶ !······ କେତେ ଉଷ୍ମତା ସେ ଓଠରେ ······କେତେ ରୋମାଞ୍ଚ ସେଇ ଦେହର ସ୍ପର୍ଶରେ, ଏବଂ ସର୍ବୋପରି କେତେ ଚମତ୍କାର ଅଜୟଙ୍କ ଦେହର ବାସ୍ନା······ସେ ସବୁ ସୁପ୍ରଭାଙ୍କଠାରେ ··· ନ୍ତ ଦୁର୍ଲଭ ।

ସୁପ୍ରଭା ସେଦିନ ପାଗଳୀଙ୍କ ··· ଅଜୟଙ୍କୁ ନିବିଡ଼ ଭାବରେ ନିଜ ଦେହରେ ଜଡ଼େଇ ଧରିଥିଲେ ।

ସେ ସବୁ ଅତୀତ ।

ସୁପ୍ରଭା ଆଜ ପ୍ରବଳ ପରାକ୍ରମୀ ପୋଲିସ୍ ଡ. ଆଇ. ଜି ଙ୍କର ଧର୍ମପତ୍ନୀ ଓ ମହିଳା କଲେଜର ପ୍ରଭାବଶାଳୀ ଅଧାପିକା ।······ଏବଂ ଅଜୟ ଏକ ହତ୍ୟାକାରୀ, ଧର୍ଷଣକାରୀ ଫେରାର୍ ଆସାମୀ । ତାଙ୍କ ବିରୁଦ୍ଧରେ ଗଦା ଗଦା ଗିରଫ୍ ପରଓ୍ୱାନା । ତାଙ୍କ ଶରୀରର ରକ୍ତ ପିଇବା ଲାଗି ତୃଷାର୍ତ୍ତ ହୋଇ ଘୂରି ବୁଲୁଛନ୍ତି ଅନେକ ପୋଲିସ୍, ରାଇଫଲ୍, ଷ୍ଟେନ୍‌ଗନ୍, ବ୍ରେନ୍‌ଗନ୍, ଓ ସଂଗୀନ୍ ଘେନି ।

ତଥାପି ସୁପ୍ରଭା ତାଙ୍କୁ ନିଶାର୍ଦ୍ଧରେ ନିଜ ଘରେ ଆଶ୍ରୟ ଦେଇଛନ୍ତି······ । ଅଜୟ ଯେତେବେଳେ ପାଚେରୀ ଡେଇଁ ଅଗଣା ଭିତରକୁ ଆସିଥିଲେ ଓ ସୁପ୍ରଭାଙ୍କ ମୁହଁରେ ହାତ ଦେଇ ଚିତ୍କାର କରିବାରୁ ତାଙ୍କୁ ବଞ୍ଚିତ କରିଥିଲେ, ସେତିକି-ବେଳେ ସୁପ୍ରଭା ପାଇଥିଲେ ଏକ ପରିଚିତ ଦେହର ବାସ୍ନା । ହେନା, ଜୁଈ, ରଜନୀଗନ୍ଧା ଫୁଲର ସମସ୍ତ ବାସ୍ନାକୁ ଅତିକ୍ରମ କରି, ସେଇ ଦେହର ବାସ୍ନା ସୁପ୍ରଭାଙ୍କ ମନକୁ ଚହଲାଇ ଦେଇଥିଲା । ତା'ପରେ ସେ ନିଶାର୍ଦ୍ଧରେ ସେଇ ପାଚେରୀ ଡେଇଁ ଆସିଥିବା ଆଗନ୍ତୁକଙ୍କ ମୁହଁକୁ ନିରୀକ୍ଷଣ କରି, ଅଜୟଙ୍କୁ ଆବିଷ୍କାର କରିଥିଲେ ।

ଅଜୟ ଯଦି ସତରେ ଆଜି ସୁପ୍ରଭାଙ୍କୁ ରେପ୍ କରିବା ପାଇଁ ଉଦ୍ୟମ କରନ୍ତି, ଅଥବା ପୂର୍ବ ପ୍ରତିଶ୍ରୁତି ପ୍ରସଙ୍ଗ ଉଠାଇ ତାଙ୍କୁ ଉପଭୋଗ କରିବା ଲାଗି ପ୍ରସ୍ତାବ ଦିଅନ୍ତି, ତେବେ ସୁପ୍ରଭା କ'ଣ କରିବେ ?······ ଯେଉଁ ସୁପ୍ରଭା ଏକଦା ପୁଅଟିଏ ପାଇବା ପାଇଁ ବ୍ୟାକୁଳ ନିବେଦନ କରୁଥିଲେ, ସେ କ'ଣ ଅଜୟଙ୍କୁ ପ୍ରତ୍ୟାଖ୍ୟାନ କରି ପାରିବେ ? ····· ବରଂ ଥରକ ପାଇଁ ହେଲେ ଅଜୟଙ୍କ ଦେହକୁ ଉପଭୋଗ କଲେ କ୍ଷତି କ'ଣ ? ···· ସୁଦୀପ୍ତ ଟୁର୍‌ରେ ଗଲେ କେତେ ନାରୀଙ୍କୁ ଉପଭୋଗ କରନ୍ତି ବୋଲି ସୁପ୍ରଭା ଜାଣି ଶୁଣି ନୀରବ ରହିଛନ୍ତି । ସ୍ୱାମୀ ଯଦି ତାଙ୍କ ପ୍ରତି ସଚ୍ଚୋଟ ନୁହନ୍ତି, ସେ ମାତ୍ର ଥରକ ପାଇଁ ସ୍ୱାମୀଙ୍କ ନିକଟରେ ବିଶ୍ୱାସଘାତକତା କଲେ କ୍ଷତି ବା କ'ଣ ? ତା' ହେଲେ ସେ ତ ଜୀବନର ଚିର ଇପ୍‌ସିତ ବସ୍ତୁଟି ପାଇ ପାରିବେ ! ଅଜୟଙ୍କଠାରୁ ଯଦି ସୁପ୍ରଭାଙ୍କର ପୁଅଟିଏ ହୁଏ, ତେବେ ତାକୁହିଁ କୋଳରେ ଧରି, ସେଇ ଅଜୟଙ୍କର ଉପସ୍ଥିତିର ଆନନ୍ଦ ପାଇ ପାରିବେ । ସ୍ୱାଂ'ଠୁ ବଳି ଗର୍ବ ଓ ଗୌରବର କଥା ସୁପ୍ରଭାଂକ ପାଇଁ କ'ଣ ବା ଆଉ ପାରେ ?

ସୁପ୍ରଭା କାନ୍ଥଘଣ୍ଟାକୁ ଗୃହିଁଲେ ।

ରାତ୍ର ଦୁଇଟା ପନ୍ଦର ।

ଓଃ…ଅଜୟ ଏ ପର୍ଯ୍ୟନ୍ତ କ'ଣ ଯେ କରୁଛନ୍ତି ? କ'ଣ ଏତେଦିନ ପରେ ସୁପ୍ରଭାଙ୍କୁ ଏକାକିନୀ ପାଇ ତାଙ୍କର କିଛି ଇଚ୍ଛା ହେଉନି ? ଟିକିଏ ଗପି ଓ ଭଲମନ୍ଦ ପଚାରି ସମୟ କଟାଇବା ଲାଗି ମନ ବ୍ୟାକୁଳ ହେଉନି ?

ନା … ଅଜୟ କିଛି ନ ପଚାରି ଭଲ କରିଛନ୍ତି । ସେ ଯଦି ପଚାରି ଜାଣିପାରନ୍ତେ ଯେ, ଯେଉଁ ପୋଲିସ୍ ଡ଼ି:ଆଇ.ଜି. ତାଙ୍କୁ ହତ୍ୟା ବା ଗିରଫ କରିବାର ଶପଥ ନେଇଛନ୍ତି; ସେଇ ସୁଧାଂଶୁ ହେଉଛନ୍ତି ସୁପ୍ରଭାଙ୍କ ସ୍ୱାମୀ, ତେବେ ସେ ହୁଏତ ମୁହୂର୍ତ୍ତିଟିଏ ବିଳମ୍ବ ନ କରି ପଳାଇ ଯାଇଥାନ୍ତେ, ଅଥବା ପ୍ରତିଶୋଧ ପରାୟଣ ହୋଇ ସୁପ୍ରଭାଙ୍କ ତଣ୍ଟି ଚିପି ହତ୍ୟା କରିଥାନ୍ତେ ।

ଅଜୟ କ'ଣ ଶୋଇ ଗଲେଣି ?… ଯେଉଁ ଅଜୟ ସୁପ୍ରଭାଙ୍କୁ ଦେଖିବା ଲାଗି ଓ ତାଙ୍କ ସହ ଘଣ୍ଟା ଘଣ୍ଟା ଧରି ଗପିବା ଲାଗି ପ୍ରତିଦିନ ମହିଳା ହଷ୍ଟେଲର ଗେଷ୍ଟ ଲାଉଞ୍ଜକୁ ଛୁଟି ଆସୁଥିଲେ ଓ ସବୁ ପ୍ରଥମେ ଆସି ସମସ୍ତଙ୍କ ଶେଷରେ ଯାଉଥିବା ଭିଜିଟର୍ ଭାବରେ ପରିଚିତ ହୋଇଥିଲେ, ସେଇ ଅଜୟ, ଏତେଦିନ ପରେ ସୁପ୍ରଭାଙ୍କୁ ଏତେ ନିକଟରେ ଓ ଏକାକିନୀ ଭାବରେ ପାଇ ମଧ୍ୟ ନୀରବ, ନିସ୍ପୃହ ।

ଓଃ !… ମଝି ଦରକାଟା ଖୋଲାଥିବା ସତ୍ତ୍ୱେ ଅଜୟ କିଭଳି ଯେ ଏକାକୀ ଶୋଇ ରହିଛନ୍ତି ଓ କୌଣସି ବାହାନା ଦେଖାଇ ସୁପ୍ରଭାଙ୍କ ବେଡ଼ରୁମ୍‌କୁ ପଶି ଆସୁନାହାନ୍ତି !

ଅଜୟ ଯଦି ଆସି ସୁପ୍ରଭାଙ୍କୁ ଉପଭୋଗ କରିବା ଲାଗି ଉଦ୍ୟମ କରନ୍ତି ତେବେ ? ସୁପ୍ରଭା ସ୍ୱାଗତ କରିବେ ? …ନା …ପ୍ରତ୍ୟାଖ୍ୟାନ କରିବେ । …ପ୍ରତ୍ୟାଖ୍ୟାନ କରି ଲାଭ କଣ ? … ସ୍ୱାଗତ କରିବେ … ତା'ପରେ ସେ ଉପଭୋଗ କରିବେ ତାଙ୍କର ପ୍ରତିଟି ସ୍ନାୟୁତନ୍ତ୍ରୀ । ଲୋମକୂପ ଓ ଶିରା ପ୍ରଶିରାରେ ଅଜୟଙ୍କ ବଳିଷ୍ଠ ପୁରୁଷତ୍ୱର କମ୍ପନ । …ତା'ପରେ ସେ ହେବ ଅନ୍ତଃସତ୍ତ୍ୱା ଓ ତାଙ୍କ ଗର୍ଭରୁ ଜନ୍ମ ନେବ ଅଜୟ । ଅବିକଳ ଅଜୟଙ୍କ ଭଳି ପୁଅଟିଏ । ତାକୁଇ

କୋଳରେ ଶୁଆଇ, ସୁପ୍ରଭା ଜୟଙ୍କ ଉପସ୍ଥିତିର ଆନନ୍ଦରେ ଆତ୍ମହରା ହେବେ।... ହେଲେ ସେ ଯଦି ଅ ଙ୍କ ଭଳି ଦୁର୍ଦ୍ଦାନ୍ତ ନକ୍ସଲପନ୍ଥୀ ହେବ। ପୋଲିସ୍ ଅଫିସରର ପୁଅ ନକ୍ ପନ୍ଥୀ ! କ୍ଷତି କ'ଣ ? ଦଳିତ, ଅତ୍ୟାଚରିତ, ଲୁଣ୍ଠିତ ମନୁଷ୍ୟର ମାନବିକ ଅ ାର ଜାହିର୍ କରିବା ଲାଗି ସଂଗ୍ରାମର ନେତୃତ୍ୱ ଯଦି ସିଏ ନିଏ କ୍ଷତି 'ଣ ? ତା' ନ ାରେ ଗଦା ଗଦା ଅଭିଯୋଗ, ଗିରଫ ପରଓ୍ୱାନା ଓ ତା'ର ମ ପାଇଁ ଲକ୍ଷ ଲକ୍ଷ ଟଙ୍କା ' ପୁରସ୍କାରର ଘୋଷଣା ।

ଓଃ...ଅଜୟ ତୁମେ କେତେ ଷ୍ଟୁର। ଚୁପ୍ ଚାପ୍ ସେ ଘରେ ବିଛଣାରେ ପଡ଼ି କ'ଣ କରୁଛ ?

କିନ୍ତୁ ଅଜୟ ଯଦି ସତରେ ି ଆକ୍ରମଣ କରିବେ, ତେବେ ସୁପ୍ରଭା କ'ଣ ବିନା ପ୍ରତିବାଦରେ ତା'ର ସ କିଛୁ ସମର୍ପଣ କରିବେ ତାଙ୍କର ଅଦମ୍ୟ ପୁରୁଷତ୍ୱ ନିକଟରେ ? ଏବଂ ତା'ର ସୁଯୋଗ ନେଇ ଅଜୟ ଯଦି ତାଙ୍କ ସହ ସୁପ୍ରଭାଙ୍କୁ ଫେରାର୍ ହୋଇଯିବା ଲ ପ୍ରସ୍ତାବ ବାଢି ବସନ୍ତି ?

ସୁପ୍ରଭାଙ୍କ ମୁଣ୍ଡ ଗୋଳମାଳ ହୋଇ ଆସିଲା। ଏଥର ସେ ଉଠି ବସିଲେ ଓ ପାଦ ଚିପି ଚିପି ଅଜୟ ଶୋଇ ା ଘରକୁ ଗଲେ। ବେଡ୍ ଲାଇଟ୍ଟା ଜଳୁଚି ଓ ଫ୍ୟାନ୍ଟା ପୁରା ସ୍ପିଡ୍‌ରେ ଘୂ । ଅଜୟ ନିଶ୍ଚିନ୍ତରେ ଶୋଇ ଯାଇଛନ୍ତି। ତାଙ୍କର ଅଯତ୍ନ ବର୍ଦ୍ଧିତ ଶ୍ମଶ୍ରୁ ାକ ପବନରେ ଥରି ଉଠୁଛନ୍ତି। କପାଳରେ କପାଳରେ ତାଙ୍କର ବିନ୍ଦୁ ବିନ୍ଦୁ । ବନ୍ଦ ଆଖି ଦୁଇଟି ମୁଦା ଶାମୁକା ଭଳି ଦିଶୁଛନ୍ତି ।

ସୁପ୍ରଭା ତାଙ୍କ କପାଳରେ ହ ମାରିଲେ। ଓଃ କ ନିଶ୍ଚିନ୍ତରେ ଶୋଇ ଯାଇଛନ୍ତି ଅଜୟ। ଅନେକ ରାତି କ୍ଳାନ୍ତି ମେଣ୍ଟାଇବାରେ ସେ ବ୍ୟସ୍ତ ଯେମିତି ।

ସୁପ୍ରଭାଙ୍କର ଇଚ୍ଛା ହେଲା, ଜୟଙ୍କ ବଳିଷ୍ଠ ଛାତି ଉପରେ ମୁଣ୍ଡ ରଖି ଶୋଇବାକୁ ଓ ତାଙ୍କ ଓଠ ଉପ ର ଓଠ ରଖି ଅଜସ୍ର ଚୁମା ଖାଇବାକୁ। ସେ ଖଟ ଉପରେ ବସି ସେ ଆସ୍ତେ ଆ ତାଙ୍କ ମୁଣ୍ଡ ନୁଆଁଇଲେ। ଅଜୟଙ୍କ ଓଠକୁ ତାଙ୍କର ଓଠ ସ୍ପର୍ଶ କରିବା ପୂର୍ବରୁ ହଠାତ୍ ଚେଇଁ ଉଠିଲେ ଅଜୟ।

ସୁପ୍ରଭା ନିଜକୁ ସଂଯତ କରି ନେଇ କହିଲେ, "ତମେ ଭୀଷଣ କ୍ଲାନ୍ତ ହୋଇ-ପଡ଼ିଛ ଅଜୟ । କିଛି ଟିକିଏ ଖାଇ ଦେଇଥିଲେ ଭଲ ହୋଇଥାଆନ୍ତା, ଅନ୍ତତଃ ବର୍ଣ୍ଣିଭିଟା ବା ଓଭାଲଟିନ୍ ଗ୍ଲାସଟିଏ ।

ଅଜୟ ସେ ସବୁର କିଛି ଉତ୍ତର ନ ଦେଇ କହିଲେ, "ପ୍ରଭା, ତମ ଘରେ କ'ଣ ଆଉ କେହି ନାହାନ୍ତି ? ନା ସମସ୍ତେ ଶୋଇ ଯାଇଛନ୍ତି···ତମ ସ୍ୱାମୀଙ୍କ ସହି ମତେତ ପରିଚୟ କରାଇନ । ମୁଁ ଏତେ କ୍ଲାନ୍ତ ହୋଇ ପଡ଼ିଥିଲି ଯେ ସମସ୍ତ ଲୌକିକତା ଭୁଲି ଶୋଇ ଯାଇଥିଲି ।"

ସୁପ୍ରଭା ନୀରବରେ କିଛି ସମୟ ଅଜୟଙ୍କ ମୁହଁକୁ ଚାହିଁଲେ କେବଳ । କ'ଣ ଉତ୍ତର ଦେବେ ସେ ? କ'ଣ ଅଜୟଙ୍କୁ କହିଦେବେ ଯେ ତାଙ୍କ ସ୍ୱାମୀ ହେଉଛନ୍ତି ସେହି ପ୍ରଚଣ୍ଡ ପରାକ୍ରମୀ ପୋଲିସ୍ ଡି. ଆଇ. ଜି. ସୁଦୀପ୍ତ ମହାନ୍ତି, ଯେ କି ଅଜୟଙ୍କୁ ମୃତ ବା ଜୀବିତାବସ୍ଥାରେ ଧରିବାର ସଂକଳ୍ପ ନେଇ କୋରାପୁଟ ଯାଇଛନ୍ତି ।....ନା ବରଂ ନ କହିବା ଭଲ ।·· ତା'ହେଲେ ସେ ହୁଏତ ଉତ୍ତ୍ୟକ୍ତ ହୋଇ ପାରନ୍ତି ।

ସୁପ୍ରଭା ଏଥର ନିରବତା ଭାଙ୍ଗି କହିଲେ, "ମୋ' ସ୍ୱାମୀ ଟୁର୍ ରେ ଯାଇଛନ୍ତି । ଦିନେ ଦି'ଦିନ ପରେ ଫେରିବେ । ପୁଅ ରାୟପୁର ରାଜକୁମାର କଲେଜରେ ପଢୁଛି । ଆଉ ଘରେ କେହି ନାହାନ୍ତି ।"

ଏତକ କହିସାରି ସୁପ୍ରଭା ଢେପ ଢୋକିଲେ । ଅଜୟ ଯଦି ପଚାରି ବସନ୍ତି ଯେ, ତାଙ୍କ ସ୍ୱାମୀ କ'ଣ କରନ୍ତି, ତେବେ ସେ କି ଉତ୍ତର ଦେବେ ? ····· କି ଅଡୁଆ ପରିସ୍ଥିତିରେ ସେ ଜାଣିଶୁଣି ନିଜକୁ ପକାଇ ଦେଲି ସତ ! କ'ଣ ଅଜୟଙ୍କୁ ମିଛ କହିବେ ?····· ତା ନ ହେଲେ ଉପାୟ ନାହିଁ । କାରଣ ସତ କହିଲେ ଅଜୟଙ୍କ ମନରେ ଯେଉଁ ଭୟଙ୍କର ପ୍ରତିକ୍ରିୟା ହେବ, ତା'କୁ ସମ୍ଭାଳିବାର ଶକ୍ତି ହୁଏତ ତାଙ୍କର ନାହିଁ ।······

ସୁପ୍ରଭା କମିତ ଏକ ଅଜଣା ବେଦନାରେ ଛଟପଟ ହେବାକୁ ଲଗିଲେ ।

ଅଜୟ ଆଉ ଅଧିକ କିଛି ପ୍ରଶ୍ନ ନ କରି, ହାତ ଘଣ୍ଟାକୁ ଚାହିଁଲେ ଓ କହିଲେ, "ପ୍ରଭା ! ଅନେକ ରାତି ହେଲାଣି । ଯାଅ ଶୋଇପଡ଼ ।"

ତାଙ୍କ କଥାରେ ଥିଲା ନିର୍ଦ୍ଦେଶର ଦୃଢ଼ତା ।

ସୁପ୍ରଭା ଅପରାଧିନୀଟିଏ ଭଳି ଚୁପ୍ ଚାପ୍ ସେଠାରୁ ଚାଲିଯିବା ଲାଗି ଉଦ୍ୟତ ହେଲେ ।

ଅଜୟ କହିଲେ, "ଯଦି କିଛି ଅସୁବିଧା ନ ହୁଏ ବେଡ୍ ଲାଇଟ୍ଟି ଲିଭାଇ ଦିଅ ।"

ସୁପ୍ରଭାଙ୍କ ଗ୍ରୀବା ଦପ୍ କିନା ହେଲା । ଅଜୟ ବେଡ୍ ଲାଇଟ୍‌ଟା ଲିଭାଇବା ଲାଗି କହିଲେ କାହିଁକି ?...... ଅନ୍ଧକାରର ସୁଯୋଗ ନେଇ ଆକ୍ରମଣ କରିବାକୁ ନୁହେଁ ତ ? .... ନା ..... ଏଇ ନିର୍ଜନ ବଙ୍ଗଳାରେ ଅନ୍ଧକାର ଓ ଆଲୋକ ମଧ୍ୟରେ ପାର୍ଥକ୍ୟ ବା କ'ଣ ଅଛି ?

ସୁପ୍ରଭା ବେଡ୍ ଲାଇଟ୍ଟି ଲିଭାଇ ନିଜ ଶୟନ କକ୍ଷକୁ ଗଲେ ଓ ସେହି କକ୍ଷର ବେଡ୍ ଲାଇଟ୍ଟିକୁ ମଧ୍ୟ ଲିଭାଇ ଦେଲେ । ଜମାଟ ବନ୍ଧା ଅନ୍ଧାର ଅଗୁନିକ ଭାବରେ ଦୁଇଟିଯାକ କୋଠରୀକୁ ଗ୍ରାସ କଲା ।

ସୁପ୍ରଭା ଏଥର ବିଛଣା ଉପରେ ଲେଟି ପଡ଼ିଲେ । ଆଖିକୁ ନିଦ ସ୍ପର୍ଶ କରୁନି । ପୁଣି ମୁଣ୍ଡରେ ସେଇ ଅଜୟଙ୍କ ଚିନ୍ତା । ଅଜୟ ନିଶ୍ଚୟ ଏଇ ଘନ ଅନ୍ଧାରର ସୁଯୋଗ ନେଇ ସ୍ୱୈର ଭଳି ନିଶବ୍ଦ ଚରଣରେ ସୁପ୍ରଭାଙ୍କ ନିକଟକୁ ଆସି ତାଙ୍କ ଗ୍ରୀବା ଉପରକୁ ଲମ୍ଫ ଦେବେ । ତା'ପରେ...... ତା'ପରେ ସେ ଛିନ୍ ଭିନ୍ କରିବେ ସୁପ୍ରଭାଙ୍କ ସମଗ୍ର ଶରୀରକୁ ··· ସତୀତ୍ୱକୁ ·······

ଗୋଟାଏ ଡାଇହାର୍ଡ଼ କ୍ରିମିନାଲ୍ ନିକଟରେ କ'ଣ ଆତ୍ମ ସମର୍ପଣ କରିବେ ସୁପ୍ରଭା ?

ନା, ଅଜୟ କେବେ ହତ୍ୟାକାରୀ ହୋଇ ନପାରନ୍ତି । ସୁପ୍ରଭାଙ୍କର ଆଦର୍ଶ ପୁରୁଷ ଅଜୟ କେବେ ଏତେ ନୀଚ ହୋଇ ନପାରନ୍ତି । ··· ··· ସୁପ୍ରଭା ଅଜୟଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ଉଚ୍ଚ ଆଦର୍ଶକୁ କେତେ ସମ୍ମାନ କରୁଥିଲେ । ସେଇ ଅଜୟ କ'ଣ କେବେ ଗୋଟାଏ ହତ୍ୟାକାରୀ ହୋଇ ପାରନ୍ତି ?······ଯେଉଁ ଅଜୟ ଗୋଟିଏ ସାମାନ୍ୟ ଘରଚଟିଆର ମୃତ୍ୟୁକୁ ବରଦାସ୍ତ କରି ପାରୁ ନଥିଲେ ସେ କ'ଣ ଗୋଟାଏ ମରେ ଗୋଟାଏ ସାହୁକାରର ମୁଣ୍ଡକୁ ହାଣି ଦେଇ ପାରନ୍ତି ?······

ଦରିଦ୍ର ଓ ନିଷ୍ପେଷିତର ମଣିଷପଣ ଅଧିକାର ପାଇଁ ଯିଏ ସଂଗ୍ରାମ କରୁଛନ୍ତି, ସେ କ'ଣ ସେଇ ଗରିବ ନିରୀହ ଆଦିବାସୀମାନଙ୍କ ପତ୍ନୀ ଓ ଭଉଣୀଙ୍କୁ ଜଘନ୍ୟ ଭାବରେ ଧର୍ଷଣ କରି ପାରନ୍ତି ?…… ଏସବୁ ହୁଏତ ସୁଦୀପ୍ତଙ୍କର ଚାଲ୍ । ସୁପ୍ରଭା ଯେ ଅଜୟଙ୍କୁ ଏକଦା ମନ, ପ୍ରାଣ ଦେଇ ଭଲ ପାଉଥିଲେ, ସୁଦୀପ୍ତ ହୁଏତ କୌଣସି ସୂତ୍ରରୁ ଏକଥା ଜାଣି ନେଇ, ଅଜୟଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାଲାଗି ଏମିତି ଏକ ଅଭିଯୋଗର ଜାଲ ବୁଣିଛନ୍ତି । ସେଇ ଜାଲରେ ଅଜୟଙ୍କୁ ପକାଇ ହତ୍ୟା କରିବେ ସେ ।…… ସୁଦୀପ୍ତଙ୍କ ପ୍ରତି ଘୃଣାରେ ସୁପ୍ରଭାଙ୍କର ଦେହ ଶିହରି ଉଠିଲା ।

ଅଜୟ ଅତି ପବିତ୍ର । ଦୈହିକ କାମନା ହୁଏତ ତାଙ୍କୁ ସ୍ପର୍ଶ କରି ନଥିବ । ସୁପ୍ରଭାଙ୍କର ମନେ ପଡ଼ିଲା ଏକ ରୋମାଞ୍ଚକର ଅନୁଭୂତି । ସେଦିନ କଲେଜ ଛୁଟି ପରେ ଅଜୟ ଓ ସେ ସାଙ୍ଗ ହୋଇ ଯାଇଥିଲେ ଗୋଟିଏ ଡାକ ବଙ୍ଗଳାକୁ ଏକାନ୍ତରେ କେଇଟି ମୁହୂର୍ତ୍ତ ଗପିବାପାଇଁ । ଅଜୟଙ୍କୁ ଏକାକୀ ପାଇ ସୁପ୍ରଭାଙ୍କ ମନ ଉତ୍ତଳା ବିକଳ ହୋଇ ଉଠିଥିଲା । ଅଜୟ ମଧ୍ୟ ସେଦିନ ଭାବପ୍ରବଣ ହୋଇ ଉଠିଥିଲେ ଓ ତାଙ୍କ ଦେହରେ ନିଆଁ ଗୁଡ଼ାଏ ଜଳି ଉଠିଥିଲା ଯେମିତି । ସେ ସୁପ୍ରଭାଙ୍କୁ ଆଲିଙ୍ଗନ କରିଥିଲେ । ପ୍ରତିବାଦ କରି ନଥିଲେ ସୁପ୍ରଭା । ସେ ମଧ୍ୟ ନିବିଡ଼ ଭାବରେ ଅଜୟଙ୍କୁ ଆଲିଙ୍ଗନ କରିଥିଲେ ।…… ସୁପ୍ରଭା ତରଳିବାକୁ ଆରମ୍ଭ କରିଥିଲେ ଏବଂ ଅଜୟ ମଧ୍ୟ । ସେ ଚୁପି ଚୁପି ସୁପ୍ରଭାଙ୍କ କାନରେ କହିଥିଲେ, "ଥରଟିଏ ହଁ କରିଦିଅ ସୁପ୍ରଭା …. ପ୍ଲିଜ୍ ।"

ସୁପ୍ରଭା ଲାଜରେ ଝାଉଁଳି ପଡ଼ିଥିଲେ ସେତେବେଳେ । ଦେହଟା ତାଙ୍କର ହୁ ହୁ ହୋଇ ଜଳୁଥିଲା । ସେ ଅଜୟଙ୍କୁ ଦୃଢ଼ଭାବରେ ଆଲିଙ୍ଗନ କରି ତାଙ୍କ କାନରେ ଫିସ୍ ଫିସ୍ କରି କହିଥିଲେ, "ତୁମେ ମତେ ବାଧ୍ୟ କରୁନ କାହିଁକି"?….

ଏଇ ପଦକ କଥାରେ ଅଜୟଙ୍କ ଦେହର ସମସ୍ତ ଜଳନ୍ତା ନିଆଁ ଶିଖା ଅକସ୍ମାତ ନିର୍ବାପିତ ହୋଇ ଯାଇଥିଲା ଯେମିତି । ତାଙ୍କର ଦେହପ୍ରାଣ ଆପେ ଆପେ ଢିଲା ହୋଇ ଯାଇଥିଲା ଏବଂ ସୁପ୍ରଭାଙ୍କ ଦୃଢ଼ ବାହୁ ବନ୍ଧନରୁ ନିଜକୁ ମୁକ୍ତ କରି ସେ ଅଳ୍ପ ସମୟ ପରେ ସେଇ କୋଠରୀରୁ ବାହାରକୁ ଆସିଥିଲେ ।

ସେହି ଅଜୟ କ'ଣ ସତରେ ଜଣେ ଦୁର୍ଦ୍ଧର୍ଷ ନାରୀ ଧର୍ଷଣକାରୀରେ ପରିଣତ ହୋଇଥିବେ ?……ଅସମ୍ଭବ…… ଅଜୟ ଅଗ୍ନି ଭଳି ପବିତ୍ର ନିଷ୍ପାପ …….

ସୁପ୍ରଭାଙ୍କର ଇଚ୍ଛା ହେଲା ପୁନର୍ବାର ଅଜୟଙ୍କ ନିକଟକୁ ଧାଇଁଯାଇ ତାଙ୍କୁ ଦୃଢ଼ ଭାବରେ ଆଲିଙ୍ଗନ କରିବେ ଏବଂ କହିବେ, ଆଜି ମୋତେ ବାଧା କରିବାର ଅବକାଶ ନାହିଁ ଅଜୟ । ମୁଁ ମୋ'ର ସର୍ବସ୍ୱ ତୁମକୁ ଅଯାଚିତ ଭାବରେ ଦେଉଛି । ତମେ ନିଅ । ଏବଂ ତା'ର ପ୍ରତିଦାନରେ ମତେ ଦିଅ ପୁଅଟିଏ । ଯିଏ ହେବ ଠିକ୍ ତୁମରି ପରି । ତାକୁଇ ପାଇ । ମୁଁ ତୁମକୁ ନ ପାଇବାର ସବୁ ଦୁଃଖ ଭୁଲିଯିବି ।

କିନ୍ତୁ ଅଜୟ ଯଦି ତାଙ୍କର ଏଇ କରୁଣ ନିବେଦନକୁ ପ୍ରତ୍ୟାଖ୍ୟାନ କରନ୍ତି ?......

ଆଉ କିଛି ଭାବି ପାରିଲେନି ସୁପ୍ରଭା । ଘରର ଗାଢ଼ ଅନ୍ଧାର ଏକ ଅତିକାୟ ଅଜଗର ଭଳି ତାଙ୍କ ଦେହ ମନକୁ ଗିଳିବାକୁ ଆରମ୍ଭ କଲା ।

କାହାର ସତର୍କ ପାଦ ଶବ୍ଦକୁ କାନଡେରି ଶୁଣିବାକୁ ଚେଷ୍ଟାକଲେ ସୁପ୍ରଭା । ...... ଅନ୍ଧକାରର ସୁଯୋଗ ନେଇ ଅଜୟ ହୁଏତ ତାଙ୍କ ନିକଟକୁ ଆସୁଛନ୍ତି । ଘରେ ଅନ୍ୟମାନଙ୍କ ଉପସ୍ଥିତିର ଆଶଙ୍କା କରି ହୁଏତ ଆଗରୁ ଏହା କରିବା ଲାଗି ସାହସ କରୁ ନଥିଲେ । ସୁପ୍ରଭାଙ୍କଠାରୁ ସବୁ କିଛି ବୁଝି ନେବାପରେ ସେ ତାଙ୍କର ସତର୍କ ଅଭିଯାନ ଆରମ୍ଭ କରିଛନ୍ତି ।

ସୁପ୍ରଭା କାନ ଡେରି ସେଇ ପାଦ ଶବ୍ଦକୁ ଭଲ ଭାବରେ ଶୁଣିବାକୁ ଚେଷ୍ଟା କଲେ । କ୍ରମେ ତା' ନିକଟରୁ ନିକଟତର ହେଉଛି । ...ଅଜୟ ଆସୁଛନ୍ତି । ଅନ୍ଧକାର ଭିତରେ ନିଜର କାମନାର ନିଆଁକୁ ଶାନ୍ତ କରିବା ପାଇଁ ..... ।

ଡ. ଆଇ. ଜି. ସୁଧାଂଶୁ ମହାନ୍ତିଙ୍କ ଧର୍ମପତ୍ନୀ, ଅଧାପିକା ସୁପ୍ରଭା କ'ଣ ଅଜୟଙ୍କ ନିକଟରେ ଅସହାୟ ଭାବରେ ଆତ୍ମସମର୍ପଣ କରିବେ ?...ନା... ପ୍ରତିରୋଧ କରିବେ । .. ତା' ହେଲେ ସେ ଅଜୟଂକ ଠାରୁ ପୁଅଟିଏ ପାଇବାର ସୁଯୋଗରୁ ବଞ୍ଚିତ ହେବେ ଯେ ? ..କିନ୍ତୁ ସୁପ୍ରଭା ତ ହତ୍ୟାକାରୀ ଓ ନାରୀ ଧର୍ଷଣକାରୀ ଅଜୟଂକଠାରୁ ପୁଅଟିଏ ପାଇଁ ବ୍ୟାକୁଳ ହୋଇ ନଥିଲେ ।.. ତାଂକର ବ୍ୟାକୁଳତା ଥିଲା ଆଦର୍ଶ ପୁରୁଷ ଅଜୟଂକଠାରୁ ସନ୍ତାନଟିଏ ପାଇବା ପାଇଁ । ସେ ଅଜୟ ଓ ଏ ଅଜୟଂକ ଭିତରେ ଆକାଶ ପାତାଳ ତଫାତ୍ ।

ପାଦ ଶବ୍ଦ ନିକଟରୁ ନିକଟତର ହେଉଛି ।

ସୁପ୍ରଭା ତକିଆ ତଳୁ ରିମପୁଲି କୁନ୍ଦୀଟାକୁ ଦୃଢ଼ ଭାବରେ ଧରିଲେ । ଅଜୟ ତାଙ୍କ ଉପରକୁ ଲମ୍ଫ ଦେବା ମାତ୍ରେ, ସେ ସେହି କୁନ୍ଦୀଟାରେ ତାଙ୍କ ମୁଣ୍ଡକୁ ଲକ୍ଷ୍ୟକରି ଭୂଷି ଦେବେ । ସଇତାନଟା ଢଳିପଡ଼ିବ ସେଇଠି । ତା'ପରେ ଲକ୍ଷେ ଟଙ୍କାର ପୁରସ୍କାର ଓ ଅସମ୍ଭବ ସାହାସିକତା ଲାଗି ସୁପ୍ରଭାଙ୍କର ପ୍ରଶଂସାରେ ସମସ୍ତ ସମ୍ବାଦପତ୍ର ଓ ଆକାଶବାଣୀ ଶତମୁଖ ହୋଇଉଠିବେ । ଗର୍ବରେ ସୁଦୀପ୍ତଙ୍କର ଛାତି ଫୁଲି ଉଠିବ ।

ପାଦ ଶବ୍ଦ ଆହୁରି ନିକଟତର ହେଲା ।

କୁନ୍ଦୀଟାକୁ ଧରି ପ୍ରସ୍ତୁତ ହେଲେ ସୁପ୍ରଭା । ତାଙ୍କ କାନମୁଣ୍ଡାରେ ଉଷ୍ମ ନିଶ୍ୱାସର ସ୍ପର୍ଶ । ସଇତାନ ଅଜୟ ଦାସ ହୁଏତ ତାଙ୍କୁ ଚୁମା ଦେବାଲାଗି ଉଦ୍ୟମ କରୁଛନ୍ତି । ଏହାହିଁ ଉପଯୁକ୍ତ ସୁଯୋଗ ।

ସୁପ୍ରଭା କୁନ୍ଦୀଟାକୁ ଧରି ଦୃଢ଼ ଭାବରେ ପ୍ରହାର କଲେ ଅଜୟଙ୍କୁ ଓ ଅନ୍ଧାର ଭିତରେ ବଞ୍ଚାଅ ··ବଞ୍ଚାଅ ବୋଲି ଚିତ୍କାର କରି ବେଡ ଲାଇଟର ସୁଇଚ୍ ଟିପିଲେ, ସେ ଗୋଟାପଣେ ଥରୁଥାନ୍ତି ।

କାହିଁ ଗଲା ଅଜୟର କ୍ଷତ ବିକ୍ଷତ ରକ୍ତାକ୍ତ ଶରୀର ?···ସୁପ୍ରଭା ଚିତ୍କାରରେ ଉଠି ପଡ଼ିଲା ତକିଆ ଉପରେ ଚେକାବାନ୍ଧି ଶୋଇଥିବା କାଳି ବିଲେଇଟି । ମ୍ୟାଉଁ-ମ୍ୟାଉଁ ରଡ଼ି କରି ପରିବେଶକୁ ଅଧିକ ଭୀତିପ୍ରଦ କରି ତୋଳିଲା ।

ତେବେ ଅଜୟ କ'ଣ ନିରାପଦରେ କୁନ୍ଦୀ ମାଡରୁ ବଞ୍ଚି ଯାଇଛନ୍ତି ?.... ନା ସୁପ୍ରଭା ସ୍ୱପ୍ନ ଦେଖି ଏମିତି ବିଳିବିଳେଇ ଉଠିଛନ୍ତି ?···

ଲାଜରେ ତାଙ୍କ ମୁହଁ ଲାଲ ପଡ଼ିଗଲା ।

ନିକଟସ୍ଥ ଯେଉଁ କୋଠରୀରେ ଅଜୟ ଶୋଇଥିଲେ, ସୁପ୍ରଭା ଦ୍ରୁତ ପଦକ୍ଷେପରେ ସେହି କୋଠରୀକୁ ଯାଇ, ଲାଇଟ୍ ଜଳାଇଲେ ।

ଅଜସ୍ର ଶୋଇଥିବା ଖଟଟି ଖାଲି ପଡ଼ିଛି ।

ସେ ହୁଏତ ରାତିର ନିର୍ଜନ ପ୍ରହରର କୌଣସି ନିଃସ୍ପନ୍ଦ ମୁହୂର୍ତ୍ତରେ ସୁପ୍ରଭାଙ୍କ ବଙ୍ଗଳା ଗୃହ ପାଚେରି ଡେଇଁ ପଳାଇଛନ୍ତି । ପୁନର୍ବାର ନିଜର ସଂଗ୍ରାମ କ୍ଷେତ୍ରକୁ ।

ତେବେ ସୁପ୍ରଭା ଯାହା ଦେଖିଲେ । ତାହା କ'ଣ ସ୍ୱପ୍ନ ?···ଏବଂ ତକିଆ ଉପରେ ଶୋଇଥିବା କାଳ ବଲେଇର ନିଶ୍ୱାସକୁ ସେ ଅଜସ୍ରଙ୍କର ଉଷ୍ଣ ନିଶ୍ୱାସ ଭାବି ଏମିତି ଚିତ୍କାର କରିଥିଲେ ।

ସୁପ୍ରଭା ହଠାତ୍ ନିଜକୁ ଯଥେଷ୍ଟ ଅସହାୟ ମନେକଲେ·· ଅଜସ୍ରଙ୍କ ସହ ଖୁସି ଗପକରି ରାତିଟା ବିତାଇ ଦେଇଥିଲେ କେତେ ଚମତ୍କାର ହୋଇ ନ ଥାନ୍ତା ସତେ !

କିନ୍ତୁ ଅଜସ୍ର ଚିର ଅଜେୟ । ସେ ସମୟର ବା ସୁପ୍ରଭାଙ୍କ ପରାଧୀନତା ସ୍ୱୀକାର ନକରି ଅନ୍ଧାର ଭିତରେ ନିଜର ଅଜସ୍ର ପଥରେ ଆଗେଇ ଯାଇଛନ୍ତି ।

ଅଜସ୍ରକୁ ହାତପାଆନ୍ତାରେ ପାଇ ହରାଇ ଦେଇଥିବାରୁ ସୁପ୍ରଭାଙ୍କର ଅସହାୟତା କ୍ରମେ ତୀବ୍ରରୁ ତୀବ୍ରତର ହେବାକୁ ଲାଗିଲା ଏବଂ ସେ ତକିଆରେ ମୁହଁ ଗୁଞ୍ଜି, ଏକ ଅସହାୟ ଛୁଆ ଭଳି କାନ୍ଦିଲେ ଆଉ କାନ୍ଦିଲେ ।

ଅଜସ୍ରଙ୍କୁ ଦୀର୍ଘ ଦିନର ବ୍ୟବଧାନ ପରେ ଅତି ନିକଟରେ ପାଇ, ତାଙ୍କ ମନରେ ଜଳି ଉଠିଥିବା ଆଲୋକର ଶିଖା ଅସ୍ୱାଭାବିକ ଭାବରେ ଲିଭି ଯାଇଥିଲା ଯେମିତି ! ଏବଂ ପୁନଶ୍ଚ ଅନ୍ଧକାର ତାଙ୍କ ଦେହ ମନକୁ ଗ୍ରାସ କରିବାକୁ ଆରମ୍ଭ କଲା ।

—୦—

# ଝୁଂଜିର

ବୀଣାପାଣୀ ମହାନ୍ତି

କବାଟର କଡ଼ା ଧରି ଝଣ ଝଣ କଲାବେଳକୁ ମହେଶ ଜାଣିଲା ଯେ, ଦୀର୍ଘ ସମସ୍ତ ଧରି ଏତେ ବାଟ ଚାଲି ଖରାରେ ତାର ପିଣ୍ଡ ଧରି ଆସିଥିବା କ୍ଳୋକଟା ଗଳାମୁଣ୍ଡରେ କୁଆଡ଼େ ଉଭାନ୍ ହୋଇ ଯାଉଛି । ସବୁଦିନ ପରି ଏ ମଧ୍ୟ ଗୋଟାଏ ବିରକ୍ତିକର, କ୍ଲାନ୍ତ ଦିନ ।

ବୋଉ ଆସି କବାଟ ଖୋଲି ଧରିଲା । ହାତପାକ ମଇଦା ଅଠା ସାଲୁ ସାଲୁ ହେଉଛି । ଠୁଙ୍ଗା ତିଆରି ପାଖରୁ ଉଠି ଆସିଛି ସେ । ପଛେ ପଛେ ମହେଶର ତିନବର୍ଷର ପୁଅ କାନ୍ଦ ଧରି ଧାଇଁଛି । ଗମ୍ଭୀର ହୋଇ ମହେଶ ପଚାରିଲା····

"ହେମ ନାହିଁକି ? କୁଆଡ଼େ ଯାଇଚି" ?

ବୋଉ ଉତ୍ତର ଦେବାକୁ ଚାହେଁନାହିଁ ଯେପରି । ମହେଶ ମଧ୍ୟ ବିଶେଷ ଶୁଣିବାକୁ ଚାହେଁନା । ହେମ ହୁଏତ ଶୋଇଥିବ, ହୁଏତ ପଡ଼ିଶା ଘରକୁ ବୁଲି-ଯାଇଥିବ କି ସିଲେଇ ଶିଖିବାକୁ ତଳ ପିଇସାଙ୍କ ସାନ ବୋହୂ ପାଖକୁ ଯାଇଥିବ ।

ମହେଶ ଦେହ ହାତ ଧୋଇ ରୋଷାଇ ଘରେ ପିଢ଼ା ପାଖରେ ଥୁଆ ହୋଇଥିବା ତାର ଭାତ ତରକାରି ଖାଇ ବସିଲା । ପ୍ରତିଦିନ ଦ୍ୱିପହରର କାର୍ଯ୍ୟବିଧି ଏହିପରି ସାରି ଥାଏ ସେ । ଘର ଭିତରଟା ବହୁଦିନ ଧରି ଚୁପ୍‌ଚାପ । ବୋଉ ଠୁଙ୍ଗା କରୁଥାଏ, କି ବଡ଼ି ପାରୁଥାଏ, ହେମ ତାର ଗ୍ରାଫ୍ଟା ବ୍ଲାଉଜ୍ ସିଲେଇ କରିଥାଏ ଆଉ କେବେ ଶୋଇ ଯାଉଥାଏ । ବେଶୀ ଭାଗ ଦିନ ଶୋଇ ଯାଇଥାଏ । ଏବେ କୁଆଡ଼େ ତାର ଆଖି କଣ ହେଉଛି । ଘରର ଗ୍ରୀଷ୍ମରେ ଗ୍ରୋଟ ପୁଅଟି ବି ପଡ଼ିଯାଉଛି । ଅନ୍ୟ ଘର ପିଲାପରି ତାର ପାଟିତୁଣ୍ଡ ନାହିଁ ।

ମହେଶ ଝାଇହାଣ ଆସି ବାରଣ୍ଡାରେ ଛୁଡ଼ା ହେଲା ଝିକେ । ତାପର ଉଠିଯାଇ ହେମର ବଡ଼ ପାନଆଣ୍ଟା ଧରି ଦୁଇଥର ତାର ଲମ୍ବାବାଳକୁ କୁଣ୍ଡାଇଲା... ଗରମ ଏତେ ଯେ ଝିକେ ଗଡ଼ ଛଡ଼ିବାର ଉପାୟ ନାହିଁ । ପୁଣି ଗୃଷ୍ଟା ବେଳେ ଯାଇଁ ସେ ଯାଗାରେ ପହଞ୍ଚିବାକୁ ହେବ.......

"କରେ ଆଜ କିଛୁ ଆଶା ଦେଖା ଯାଉଛୁ ? ଅବନୀ ମାମୁଁଙ୍କ ପୁଅ ଥିଲେଟି ଯେଠି ।" ବୋଉ ତାକୁ ପଗ୍ଚରୁଛୁ ।

"ଥିଲେ ହେଲେ ଆଶା କିଛୁ ନାହିଁ । ଯିଏ ଗ୍ଚକିରିଟି ପାଇବ ସେ କଥା ବହୁତ ଆଗରୁ ଠିକ୍ ହୋଇ ସାରିଛୁ । ତୁ କହିଲାରୁ ମୁଁ ଯିବା ଗଲି ବୋଉ ନଚେତ୍ ।" ବୋଉ କହିଲା—ହାଇରେ କପାଳ ।

"କପାଳ ଏତେ ଯାଗା ଦଉଡ଼ି ଦଉଡ଼ି ଶେଷକୁ କୋଉଠି ହେଲାନାହିଁ । ତୋ ସାଙ୍ଗର ସବୁ ନବୁଁକିଆ ପିଲା, ଫେଲ ପିଲା ଏଡ଼େ ଏଡ଼େ ଗ୍ଚକିରି ପାଇଗଲେଣି ।"

ମହେଶ ଏ ପ୍ରସଙ୍ଗରେ ଆଲୋଚନା କରିବାକୁ ଗ୍ଚହେଁ ନା । ନିଜ ଭିତରେ ଶୁଆଇ ରଖିଥିବା ବହୁଦିନର ଦୈତ୍ୟଟାକୁ ମଧ୍ୟ କନ୍ଦରୁ ସେ ଉଠାଇବାକୁ ଗ୍ଚହେଁ ନା । ବୋଉକୁ କେମିତି ସେ ବୁଝାଇବ ଯେ ଇଣ୍ଟରଭିଉ ସହ ଗ୍ଚକିରିର ଆଦୌ ସମ୍ପର୍କ ନାହିଁ । କେମିତି କହିବ ଯେ ଏହା ଜାଣିଥିବା ସତ୍ତ୍ୱେ ମଧ୍ୟ ପ୍ରତ୍ୟହ ତାର ମନ ରକ୍ଷା କରି ସେ ନିୟମିତ ସମୟରେ ଘରୁ ଯାଉଛି । କାରଣ ଏଠାରେ ଯଦି ମହେଶ ବସି ରୁହେ, ତେବେ ସେ ଯେ ସଚଳ ରହିଛି ଏବଂ ପରିବାର ସମ୍ବନ୍ଧରେ ଚିନ୍ତା କରୁଛି ଏହାର ପ୍ରମାଣଟିଏ ବି ଦେଇ ପାରିବନି ।

ବୋଉ ତାର ପୁଅକୁ ଗୋଡ଼ ଉପରେ ଶୁଆଇ ଦେଇ କହିଲା—

"ତା ହେଲେ ଗୁଣନିଧିଙ୍କୁ କହିଲୁନି ସେ ଝିକେ ବୁଝାସୁଝା କରିଥାନ୍ତା, ସେ ତ ଶହେ ଥର ଘରକୁ ଆସିଲାଣି ତୁ ତ ଘରେ ରହୁନୁ, ମୁଁ କହିବି କଣ"?

ମହେଶ କହିଲା —

"ଆଜ ଗୃଷ୍ଟା ବେଳେ ଯେଉଁଠି ମୋର ଦେଖା କରିବାର ଅଛି, ସେଇଟି ହେଲା ଶେଷ ଚେଷ୍ଟା ନ ହେଲେ' ଗୁଣନିଧି ଯାହା କହିବ ମୁଁ ଶୁଣିବି । ଦାଶରଥି ଯାହା କହିବ ମୁଁ କରିବି.......କିଛି ନ ହେଲେ ବୋଉ ମୁଁ ଘରେ ବସି ତୋ ସାଙ୍ଗରେ ଘର କାମ କରିବି ।"

ବୋଉ ହସିବାକୁ ସତେ କ ବାଧା । କେତେ କଷ୍ଟରେ ଯେ ସେ ହସିଲା, ମହେଶ ବୁଝି ପାରିବାକୁ ବାକ ରହିଲ ନାହିଁ । ମାତ୍ର ଘରଖୁଣ୍ଟ ପଦାକୁ ଚାଲି ଆସିବାକୁ ପୁଣି ତ ବୋଉ ରାସ୍ତା କରିଦେବା ଦରକାର ।

ମହେଶ ଜାଣିଲା ଚାରିଟାବେଳର ସେ ଦର୍ଶନ ଓ ଅପେକ୍ଷାରେ କିଛି ଲାଭ ନାହିଁ । ପ୍ରତିଦିନ ପରି ଆଜି ଦିନଟି ବ୍ୟର୍ଥ ହୋଇଗଲେ କିଛି ଯାଏ ଆସେନା ମହେଶର, ହେଲେ ଏପରି କେତେ ପ୍ରତିଦିନ ଚାଲିବ ? ତା ନିଜ ପାଇଁ ଏ ସବୁର ପ୍ରୟୋଜନ ନ ଥାଇପାରେ ହେଲେ ଅନ୍ୟମାନଙ୍କ ପାଇଁ ତ······ମାନେ ଜୀବନ ଓ ତାର ଆଭିମୁଖ୍ୟ ସଂପୂର୍ଣ୍ଣ ଭାବରେ ନିଜସ୍ୱ ନ ହେଲାବେଳେ ଅନ୍ୟମାନଙ୍କ ଉପଦେଶ ଅନ୍ତତଃ ତାର ଗ୍ରହଣ କରିଯିବା ଉଚିତ ।

ଧେତ୍ ! ଏପରି ଗୋଟାଏ ସମୟ ଆସିଗଲାଣି ମହେଶ ପାଇଁ ଯେ ତାର ଅନ୍ତରଙ୍ଗ ନିଜସ୍ୱ ବୋଲି କିଛି ଆଉ ନାହିଁ । ବିଚାର ଓ ରୁଚି ସବୁ ବର୍ତ୍ତମାନ ଅନ୍ୟର ଯେପରି ବୁଦ୍ଧି ଓ ଡିଗ୍ରୀ ସମାଜର, ଯେପରି ଅର୍ଜନ ପରିବାରର, ଯେପରି ଦେହ ହେମଲତାର, ଯେପରି ଚାଲୁଥିବା ରାସ୍ତା ସରକାରଙ୍କର, ଯେପରି କର୍ମସବୁ ଈଶ୍ୱରଙ୍କର । ଯେପରି ··ଯେପରି ଅନେକ କିଛି ଅନେକଙ୍କର । ତାର ଦାୟିତ୍ୱରେ ଠେଲାଗାଡ଼ି ବୁହାଇ ନେବା ଦରକାର ମନେକଲେ ହ'ଚାରି ଡ଼ାକ ଦେଇ ନିଦ୍ରିତ କଅଁଳା ଛୁଆଙ୍କୁ ମା କୋଳରେ ଚମକାଇ ଦେବା ; ତାର ଆଉ ଆସ୍ତିତ୍ୱରେ କଣ ଅଛି ? ସତେକି କିଛି ଯେତେବେଳେ ନାହିଁ, ସେ ଠେଲା ଗାଡ଼ିଟା ଟାଣି ନେଉନି କାହିଁକି ? ଗୁଣନିଧି, ଦାଶରଥିଙ୍କ ଆସିବାକୁ, ଖୋସାମତକୁ ସେ ଅପେକ୍ଷା ରଖିଛି କାହିଁକି ? ଆଉ ଚାରିଟା ବେଳେ ଇଣ୍ଟରଭିଉ ଦେବାକୁ ଯିବାର ପ୍ରୟୋଜନ ତାର ସତରେ ଅଛି କି ? ନାଁ, ନାଁ, ···କିଏ ଯେମିତି କାନେ କାନେ କହୁଛି ମିଛରେ କେତେ ଡେରି କଲୁଣି, ଆଉ ଲାଭ ନାହିଁ ଲାଭ ନାହିଁ···। ବୋଉ ସିନା ମିଛ କହୁଛି, ଚାରିଟାବେଳେ ଜଣ ଇଣ୍ଟରଭିଉ ଥାଏ । ବୋଉଟା ବି ବଡ଼ ବୋକି । କିଛି ବୁଝେନା ।

ମହେଶ ବେଦମ୍ ଦଉଡ଼ିଲା ପରି ହୋଇ ଗୁଣନିଧି ଘରେ ଯାଇ ପହଞ୍ଚିଲା । ଗୁଣନିଧି ବୋଉର କୋଉ ସମ୍ପର୍କରେ ଭାଇ କେଜାଣି, ମାମୁଁ ବୋଲି ଡ଼ାକିବାକୁ ବୋଉ କେତେବାର କହିଥିଲେ ବି ତାର ପାଟିରେ ପଶେ ନାହିଁ । ମହେଶକୁ ଅଗ୍ନିକ ଦେଖି ଦାଣ୍ଡଘର ଖଟ ଉପରୁ ଗୁଣନିଧି ଉଠି ପଡ଼ିଲେ—

"କରେ ପୁଅ । କଣ ହେଲା ? ଘରେ ସବୁ ଭଲତ ? ଏମିତ ଧଇଁ ସଇଁ କାହିଁକ ହେଉଛୁ । ଆ ଘରକୁ ଆ ।" ମହେଶ କହିଲା—

"ଆଉ ହେବନି ମାମୁଁ ! ତମେ ଟିକିଏ ନ ଲାଗିଲେ କିଛି ହୋଇ ପାରିବନି ।"

"କହୁନୁ....କଣ କହିବି କହ ! ତତେ ତ ମୁଁ ବୁଝାଇ କେତେବାର କହିଛି ଏ ସବୁ ଗ୍ରେଟକାଟିଆ କାମ ମତେ କହିବୁନି ! ତୋ ଭଳି ଯୋଗ୍ୟତା କେତେ ଜଣଙ୍କର ଅଛି ? ଅକ୍ଷର ଚିହ୍ନି ନ ଥିବା ଲୋକଗୁଡ଼ାଙ୍କୁ କୋଉଠି କୋଉଠି ମୁଁ ଯୋଇ ଦେଇଛି ତୁ ଜାଣିଥିବୁ । ତୋ ଭଳି ପିଲାଙ୍କୁ ହାଇରେ ଗୃହକଷ୍ଟ ଅଭାବ ? ତୁ ଟିକେ ମନ ଦେଲେ, ବର୍ଷେ ଗୋଟାକରେ କାହିଁରେ କ'ଣ ହୋଇ ବସିବୁ । ଗୁହିଁଲେ ବ ଶହ ଶହ ଅଫିସର, କଳ କାରଖାନା, ବ୍ୟବସାୟୀ ତୋର ପାଦତଳେ ଖଟିବେ....ତତେ ପୁଣି ଗୁଣନିଧି ଆଉ ଥାଉ କିରାଣୀ ଗୃହକଷ୍ଟ କରି ପେଟ ପୋଷିବାକୁ ହେବ ? ରାମ ରାମ ।"

ମହେଶ କିଛି କହୁ ନ ଥିଲା । ଠେଲା ଗାଡ଼ିପରି ଠେଲି ହୋଇ ସେ ଆସିଛି । ଗୁଣନିଧି କେତେ ମଇଳା ପକେଇବ ପକଉ । ତକଆ ତଳୁ ପାଞ୍ଚ ଶହ ଟଙ୍କାର ପାଞ୍ଚଖଣ୍ଡ ନୋଟ ବାହାର କରି ମହେଶ ହାତକୁ ଦେଇ ଗୁଣନିଧି କହିଲା—

"ରଖ, ଆଉ ଦରକାର ହେଲେ ନେଇଯିବୁ । ସଂଧ୍ୟାରେ ନିୟମିତ ଆମ ଅଫିସରେ ଟିକେ ମୁହଁ ମାରି ଦେବୁ....କାମବେଳକୁ ତତେ ଅଲଗା ବାଟେ ଖବର ଯିବ । ଆଗ ଟିକେ ଫୁର୍ତ୍ତି କର···ଯେତେ ହେଲେ ପିଲାଟା ତୁ ନାଁ ଆଉ କଣ ?

"କାଲୁ କାମଟା କ'ଣ ? ମତେ ଆଗରୁ ନ କହିଲେ·· ।" ମହେଶ ଥଂଗ ଥଂଗ ହୋଇ ପଚାରିଲା ।

"କାମ ଜାଣିବାକୁ ଏତେ ବ୍ୟସ୍ତ କାହିଁକି ? ଦଲେ ଜାଣିବୁ । ବିନା କାମରେ ତତେ କେହି ପଇସା ଦେବେନି···ହେଲେ କାମର ଗୁଣ, ଭଲ ମନ୍ଦ ଏତେ ବିଗ୍ଭର କରି ଆଗରୁ ଲାଭ ନାହିଁ । ପେଟ ପୋଷ, ନାହିଁ ଦୋଷ··· ହେଁ ହେଁ ବୁଝିଲୁ ପୁଅ ପାଠ ଗୁଡ଼ାଏ ପଢିଲୁ ସିନା ବାପ ଯୋଗୁ, ହେଲେ ଶାଠ ଟିକିଏ ଜାଣିଲୁ ନାହିଁ ।"

ମହେଶ କେମିତ ଜଡ଼ସଡ଼ ହୋଇ ଉଠିଲା । ଗୁଣ ମାମୁଁ ରାଜନୀତି କରନ୍ତି । ବଡ଼ି ସକାଳରେ ଗାଁ ଗଣ୍ଡା ବୁଲି ସେବା କାର୍ଯ୍ୟ କରି ଖବର କାଗଜରେ ଫଟୋ ଛପିଥାନ୍ତି । ବଡ଼ ବଡ଼ ହାକିମ ହୁକୁମାଙ୍କୁ ଚିହ୍ନନ୍ତି । ତାଙ୍କମାନଙ୍କ ଘରେ

ନିମନ୍ତ୍ରଣକୁ ଯାଆନ୍ତି । ବେଳେବେଳେ ବିର୍ ବଜାରରେ ସେମାନଙ୍କୁ ଗାଳି ଦିଅନ୍ତି । ଯିଏ ଯେଉଁଠି ତାଙ୍କୁ ଦେଖେ ହାତ ଉଠାଇ ମୁଣ୍ଡ ନୁଆଁଏ । ଗୁଣ ମାମୁଁଙ୍କର ଦୁଇ ଦୁଇଟା ବଡ଼ କୋଠାବାଡ଼ି ଅଥଚ ସେ କଣ କେଉଁ ବାଟରେ ଅର୍ଥ ଉପାର୍ଜନ କରନ୍ତି, କୋଉ ଅଫିସ୍‌ରେ କାମ କରନ୍ତି ବୁଝିବା ମହେଶ ପାଖରେ ସମ୍ଭବ ହୋଇନି । ଅଥଚ ଦିନ ରାତି ଚବିଶ ଘଣ୍ଟା ଗୁଣ ମାମୁଁ ବ୍ୟସ୍ତ, ସମୟ ନାହିଁ ତାଙ୍କୁ ଖାଇବାକୁ କି ଶୋଇବାକୁ । ବେଳେ ବେଳେ ବୋଝ ବୋଝ କାଗଜପତ୍ର ନେଇ ସେ ବଡ଼ ବଡ଼ ଓକିଲଙ୍କ ପାଖରେ ବସିଥାନ୍ତି । କ'ଣ ସେ ବ୍ୟାପାର ଆଜି ପର୍ଯ୍ୟନ୍ତ କେହି ମହେଶକୁ ସଠିକ ଭାବରେ କହି ନାହାନ୍ତି । ହଠାତ୍ ଘଡ଼ିକୁ ଅନାଇ ଗୁଣନିଧି କହିଲେ "ହେ ପୁଅ ମୁଁ ଚାଲିଲି । ପାର୍କରେ ମିଟିଂ । ରକ୍ତଦାନ କରିବାକୁ ଆଜି ସଭା ଡକାଯାଇଛି । ତା ପରକୁ ଆଉ ଗୋଟା ମିଟିଂ ଦରଦାମ ବିରୋଧ ପାଇଁ ଲାଗିଛି । ତୁ ଘରକୁ ଯା....କାଲି ତୋ ସହି ମୁଁ ଦେଖା କରିବି । ଖବରଦାର ତୋ ସାଙ୍ଗସାଥୀ ଯେପରି ଏ ଚାକିରିର ଖବର ନ ପାଆନ୍ତି । କିଛି ନାହିଁ ଯେ, ନିନ୍ଦୁକ ସଂଖ୍ୟାତ କିଛି କମ୍ ନାହାନ୍ତି । ଗୁଣ ନିନ୍ଦୁଛି କିଏ ? ତୋର ଯୋଗ୍ୟତାକୁ ସମସ୍ତଙ୍କର ହିଂସା ।"

ମହେଶ ପଦାକୁ ଚାଲିଆସିଲା । ଏତେ ଦିନ ପରେ ନିଜ ସହିତ ଏକ ଚୁକ୍ତି କରିପାରିଛି ବୋଲି ସେ ଏକ ଲମ୍ବା ନିଶ୍ୱାସମାରି ଘର ଆଡ଼କୁ ଚାଲିଲା । କେତେ ଦିନ ପରେ ସେ ପକେଟକୁ ଟଙ୍କା ଆସିଲେ ତାର ମନେ ପଡ଼ୁନି । ପୁଣି ସେ ଟଙ୍କା କୌଣସି କାର୍ଯ୍ୟ ନ କରି ଝାଳ ନ ବୁହାଇ... । ନାହିଁ ନାହିଁ ଠେଲାଗାଡ଼ି ଅଟକାଇ ଦେବ ସେ, ନାହିଁ, ଅନ୍ତତଃ ତାକୁ ସେ ଅନ୍ଧାରରେ ରଖିବ । ବୋଉକୁ, ହେମକୁ ଯାଇ ସେ କହିବ ତାର ଚାକିରି ହୋଇଯାଇଛି । ସେମାନଙ୍କର କିଛି ଚିନ୍ତା ନାହିଁ ଏବଂ ଏହା ଏପରି ଏକ ସୁବିଧାଜନକ ଚାକିରି ଯେଉଁଥିରେ କି ବିନା କାମରେ ତାକୁ ଆଡ଼ଭାନସ ମଧ୍ୟ ମିଳିଛି । ହସ, କାନ୍ଦ ଉଭୟ ଅନୁଭୂତି ନେଇ ମହେଶ ଘରକୁ ଏକଦମ୍ ଦଉଡ଼ିଲା ପରି ଚାଲିଗଲା ।

ତା'ପର ଦିନ ସକାଳୁ ଗୁଣନିଧିଙ୍କ ଘରୁ ଡାକରା ଆସି ପହଞ୍ଚିଲା । ଯିବାକୁ ହେବ । ସତକଥା ଗୁଣନିଧି କହିଥିଲେ ଏ ଚାକିରିର କିଛି ନିର୍ଦ୍ଦିଷ୍ଟ ସମୟ ନାହିଁ ।

ଗୁଣନିଧିଙ୍କ ବୈଠକ ଖାନାରେ ପ୍ରବଳ ଭିଡ଼ । ତାଙ୍କ ପରି ଢଡଙ୍ଗା ଜଣ ଯୁବକ ଏକାଠି ଗୁଞ୍ଜାଗୁଞ୍ଜି ହୋଇ ବସିଛନ୍ତି । ଗୁଣ ମାମୁଁ ହସିଦେଇ କହିଲେ "ଏଇ ଆସିଲା ତୁମର ନେତା : କଣ ବୁଝିଲୁ ବନବନ୍ଧାଶ ? ତୁମେ ସବୁ ଦୋକାନ

ଗୁଣ୍ଡା ଘେରାଉ କରିନେବ, ଦରକାର ମନେକଲେ ଦୁଇ ଘଣ୍ଟା ବସ୍ତା ଏପଟ ସେପଟ ଗଡ଼େଇ ଦେବ ଏବଂ ସ୍ଲୋଗାନ ଦେବ । ମହେଶ କେବଳ ତୁମ ପାଇଁ ଜବାବ୍ ଯାହା ଦେବାର ହେବ ଦେବ । ଧରିନିଅ ଯଦି ପୁଲିସ୍ ଆସେ ଅବଶ୍ୟ ଏତେ ଦୂର ଯିବନି ମୁଁ ତା' ପୂର୍ବରୁ ପହଞ୍ଚି ଯାଇଥିବି । ପୋଲିସ ଯଦି ବା ଆରେଷ୍ଟ କରିନିଏ ତୁମେମାନେ ଡ଼ରିଯିବ ନାହିଁ, ମୁଁ ଅଛି ଦେଖିବା କିଏ ରକ୍ଷା କରୁଛି ସାହୁକୁ । ଶଳା ! ସବୁ କଳା ପୋଡଥା ଦେଶଟାକୁ ଗ୍ରେବାଇ ଖାଇ ଗଲେଣି ।" ମହେଶ ବନବିହାରୀଙ୍କ ମୁହଁକୁ ଚାହିଁଲା । ବନ, ନନ୍ଦ, ରଘୁ, ଗୁରୁ ଇତ୍ୟାଦିଙ୍କୁ ବା ସେ ନୂଆ କରି ଦେଖୁଛି । ସବୁ ଯାହା ଚିହ୍ନା ମୁହଁ ଅଥଚ ଏଇ ଟିକକ ଆଗରୁ ସେମାନେ କେତେ ଅପରିଚିତ ଥିଲେ । ଏମାନଙ୍କୁ ଓ ଏମାନଙ୍କର ଦୈନନ୍ଦିନ ବ୍ୟବସାୟ ବିଷୟରେ ସେ ଯେ ନ ଜାଣେ ଏମିତି ନୁହେଁ ଅଥଚ ଏମାନେ ଗୁଣ ମାମୁଁଙ୍କ ଭଳି ଜଣେ ଦେଶସେବୀ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ପାଖରେ ଏକଜୁଟ ହେବାର ଅର୍ଥ କଣ ?

"ବୁଝିଁଲୁ ବନବିହାରୀ ! ମହେଶ୍‌ରେ ବୁଦ୍ଧି ଅଛି, ଡ଼ିଗ୍ରୀ ମଧ୍ୟ ଅଛି । ତାକୁ ବେଶୀ ଶିଖାଇବାକୁ ପଡ଼ିବନି । ତଥାପି ତୁ ପ୍ରିଲିମିନାରିଗୁଡ଼ା ତାକୁ ଟିକେ କହିଦେବୁ ଯା । ସେ ପାଖ ଘରକୁ ଯା ତୁମେ ଦୁଇଜଣ ।" ମହେଶ ସତର୍କ ହୋଇ କହିଲା ନାହିଁ ମାମୁଁ "ମୁଁ ବଳେ ବୁଝି ଯିବିନି କି ? ପ୍ରାୟ ବୁଝି ଗଲିଣି । ଆଉ ଯାହାତ ସେଠି ଫିଲଡ୍ ଉପରେ କରିବାକୁ ହେବ । ଏବେ କୁହ କେତେ- ବେଳେ ଯିବା । "

"ସାବାସ ! ମୁଁ କହୁ ନ ଥିଲି ପାଠରେ, ଡ଼ିଗ୍ରୀର କଣ ଗୋଟାଏ ମୂଲ୍ୟ ନାହିଁ ? ହେଇ ଦେଖ ତାର ନମୁନା । ଆଗରୁ କହି ଦେଉଛି ସମସ୍ତଙ୍କୁ, କାହାରି ଦେହରେ ମୁଣ୍ଡରେ ହାତ ଦେବନି ··· । ଫୌଜଦାରୀ ଯେପରି ନ ହୁଏ । ଜାମିନ୍ ଯୋଗାଡ଼ କରି ଶେଷରେ ମଣିଷ ନାକେଦମ୍ ।"

ମହେଶ ଜାଣୁଥିଲା ଦଶ ବାରଟା ମୁହଁ ଏପଟ ସେପଟ ଘୂରିଗଲା । ଆଖିରେ ଆଖି ମିଶି ଯେପରି ସମସ୍ତେ ତାକୁ ପରିହାସ କରୁଛନ୍ତି । ସେମାନଙ୍କର ବଳିଷ୍ଠ ହାତ ପାପୁଲି ଯେପରି ମୁଠା ହୋଇ ମହେଶର ବୁଦ୍ଧିକୁ ଗୁଣ୍ଡା କରି, ଚୂନା କରି ଦେଉଛି ।

ତରିଗଲେ ଚଳିବନି । ବୁଦ୍ଧି ଥିବା ଲୋକ ଦେହର କମ୍ପିତ ଭ୍ରୂକ୍ଷେପ କରେ ନାହିଁ । ମହେଶ ମୁହଁରେ ଜମିଥିବା ଝାଳକୁ ପୋଛି ନେଇ ମୃଦୁ ମୃଦୁ ହସିବାକୁ ଚେଷ୍ଟା କରୁଥିଲା ।

କେମିତି କ'ଣ ଘଟଣା ଘଟିଗଲା କେଜାଣି, ମହେଶର କିଛି ମନେ ନାହିଁ । କେବଳ ଏତିକି ମନେ ଅଛି ଗୋଦାମ ଘର ଗୃଶପଟ ସନ୍ଧ୍ୟା ବେଳେ ଘେରିଯାଇ ସେମାନେ ଯେତେବେଳେ ସ୍ଲୋଗାନ ଦେଉଥିଲେ ଲାଉଟି ଗୃଲି-ଯାଇଥିଲା ସଙ୍ଗେ ସଙ୍ଗେ । ସେ ଅନ୍ଧାର ଭିତରେ ମନେ ହେଲା ଯେମିତି ତାଙ୍କ ଦଳ ସଙ୍ଗରେ ଗୁଡ଼ାଏ ଲୋକ ଆସି ମିଶିଯାଇଛନ୍ତି । ଧସ୍ତାଧସ୍ତି ପାଟିତୁଣ୍ଡ ଭିତରେ ମହେଶ ଯେତେ ଯାହାକୁ ଅଟକାଇ ଶୃଙ୍ଖଳା ରଖିବାକୁ ଚେଷ୍ଟା କଲେ ବି ସମ୍ଭବ ହୋଇନଥିଲା । ହଠାତ୍ ଗୋଟାଏ ଭାରି ଜିନିଷର ଆଘାତରେ ସେ ଚିତ୍କାର କରି ତଳେ ପଡ଼ିଗଲା ବେଳେ ବନବିହାରୀର ଗୃପା କଣ୍ଠରୁ ଶୁଣିପାରୁଥିଲା—ଶାଳା ବୁଦ୍ଧି ର ତେଜ ଦେଖଉଛୁ । ନେତା ହେବ ଆମର ! ଜବାବ୍ ସୁଆଲ କରିବ । ପାଠ ପଢ଼ିଛୁତ କୋର୍ଟ କଚେରୀ ଅଫିସରେ ବାବୁ ନ ହୋଇ ଏଠିକି ଆସିଛୁ ଫାଇଦା ଉଠେଇବାକୁ କାହିଁକି ? ମହେଶର ଆଉ କିଛି ମନେନାହିଁ । ଯେତେ ଚେଷ୍ଟା କଲେବି ଘଟଣା କ'ଣ ଘଟିଗଲା କପରି ହେଲା ଜାଣିହେଉ ନାହିଁ । ହସ୍‌ପିଟାଲ ? ଗୃଶପଟର କାନ୍ଥ ଭିତରେ ନିଜର ଅବସ୍ଥିତି ସାଥିକୁ ବୋଉର, ହେମର ଶୁଖିଲା ମୁହଁ ଯେପରି ତାକୁ ବାରମ୍ବାର ବିସ୍ମୃତି ଗର୍ଭକୁ ନେଇଯାଉଛି । ଏହା ଭିତରେ ପୋଲିସ୍ ଆସି ପଗୃରି ଗଲାଣି ହଜାର ପ୍ରଶ୍ନ, ମାତ୍ର ତାର ଯେ କିଛି ମନେ ପଡୁନାହିଁ । ଏପରି ଏକ ଅଭିନୟ କରିବାକୁ ଗୁନ୍ଦେଧି ତାକୁ ସତର୍କ କରେଇ ଯାଇଛି । ବୋଉକୁ ମଧ୍ୟ ବୁଝେଇ ଯାଇଛି ଯେପରି ଭୁଲରେ ମହେଶ ତାଙ୍କ ନାମ ନ ଧରେ···ତା ହେଲେ ଚିରଦିନ ପାଇ ହୁଏତ ବୋଉ ତାକୁ ହରେଇ ବସିବ । ତହିଁ ପରଚିତ କେହି ଦେଖା କରିବାକୁ ମନା କରାହୋଇଛି···।

ନର୍ସ ଆସୁଛି ଟ୍ରେରେ ଇଂଜେକ୍‌ସନ ଧରି ପଛରେ ତାର କିଏ ସେ'ଜଣ ? କେଉଁଠି ଦେଖିଛି ମହେଶ··· । ଆରେ ଏ'ତ ସେଇ ଲୋକ ଯିଏ ପ୍ରତିଥର ସେ ଇଣ୍ଟରଭିଉରୁ ଫେରିଲା ପରେ ଘରର ଶେଷ ଗଳି ପର୍ଯ୍ୟନ୍ତ ତାକୁ ଗୋଡ଼େଇଲା ପରି ଆସେ କିନ୍ତୁ, କିନ୍ତୁ କାହିଁକି ? ସେ କାହିଁକି ଆସିଛି ? ଅସ୍ଵସ୍ତିରେ ମହେଶର ଦେହ ମୁଣ୍ଡରେ ଯନ୍ତ୍ରଣା ଭରି ଉଠିଲା । ନର୍ସ ଆଙ୍ଗୁଠି ଦେଇ ସମସ୍ତଙ୍କୁ ଇଙ୍ଗିତ କରୁଛି ଚୁପ୍ ରହିବା ପାଇଁ । ମହେଶ ଜାଣିକରି ଆଖି ବୁଜି ଦେଲା । ବର୍ତ୍ତମାନ ବୋଧେ ତାକୁ ଇଂଜେକ୍‌ସନ ଦେଇ ଶୁଆଇ ପକେଇବେ କି କ'ଣ ?

ଆଗନ୍ତୁକଟି ଫିସ୍ ଫିସ୍ କରି କହୁଥିଲା—, କାହାକୁ ଡରିବାର କିଛି ନାହିଁ । ଦାଶରଥି ବାବୁ ଖବର ପଠାଇଛନ୍ତି । ଆପଣ ଗୁଣ୍ଡାମାନଙ୍କର କାରବାରରେ ଡ଼ରିଯିବେ ନାହିଁ । ···ଟ୍ରିଟ୍‌ମେଣ୍ଟ ପାଇଁ ଯାହା କିଛି ଟଙ୍କା ସେ

ଦେବେ । ଯଦି ପୋଲିସ ଆରେଷ୍ଟ କରନ୍ତି ତେବେ ସେ ଖୋଦ୍ ଜାମିନରେ ଯାଇଁ ମହେଶଙ୍କୁ ଆଣିବେ । ବର୍ତ୍ତମାନ କିନ୍ତୁ ଏ ବିଷୟରେ ଆପଣ କେଉଁଠି ଆଲୋଚନା କରିବାକୁ ସେ ମନା କରିଛନ୍ତି । ଗୁଣନିଧି ଯେଉଁ ପ୍ରକୃତିର ଲୋକ ଦେଖିଲେ ତ···ଛିଃ, ଛିଃ ଗୋଟାଏ ଟ୍ୟାଲେଣ୍ଟେଡ଼ ଯୁବକର ମୁଣ୍ଡରେ ଆଘାତ ଦେବାକୁ କିପରି ସେ ସାହସ କଲା ? ତାର ମୁକାବିଲା ନିଶ୍ଚୟ ଆମେ କରିବୁ । ଆପଣ ଆଦୌ ବ୍ୟସ୍ତ ହେବେ ନାହିଁ.... । ଏଇ ରଖନ୍ତୁ ହଜାରେ ଟଙ୍କା ଦରକାର ହେଲେ ଲକ୍ଷ୍ମୀ ହାତରେ ଖବର ଦେବ ।

କିଏ ଜଣେ ଆସ୍ତେ କରି ବୋଧେ ସେଇ ନର୍ସ କହିଲା—"ଆପଣ ଚାଲିଯାନ୍ତୁ । ସର୍ଜନଙ୍କ ଭିଜିଟ୍ ବେଳ ହୋଇ ଆସିଲାଣି । ଗୁଣନିଧି ବାବୁ ତାଙ୍କର ଭାରି ସାଙ୍ଗ । ସେ ବି ଡକ୍ଟରଙ୍କ ରୁମ୍‌ରେ ଅଛନ୍ତି ଜାଣିଲେ ମୋର ଚାକିରି ଯିବ । ଯାନ୍ତୁ ।"

ଲୋକଟି ଚାଲିଯିବାର ପାଦ ଶୁଭୁଛି ଏବଂ ଖସ୍ ଖସ୍ କରି ବୋଉ କି ହେମ କିଏ ଜଣେ ଟଙ୍କା ଗଣିବାର ଶବ୍ଦ ମଧ୍ୟ କାନକୁ ଆସୁଛି । ଆଉ ଭାବି ପାରିଲାନି ମହେଶ । ନର୍ସର ସରୁ କୋମଳ ହାତ ତାର ବାହୁରେ ଚିପଦେଇ ଇଞ୍ଜେକ୍‌ସନ ପାଇଁ ସ୍ଥାନ ନିର୍ଣ୍ଣୟ କରୁଛି । ଟିକକ ପରେ ତାର ସ୍ମୃତି ସେ ପୁଣି ବିଲୟ ହୋଇଯିବ ଅନ୍ଧକାରରେ ଓଃ !

ନାଁ ସ୍ମୃତି ଯାଇନାହିଁ । ଖାଲି ଝିମ ଝିମ ଲାଗୁଛି ଦେହ । ପୁଣି କିଏ ସବୁ ଆସି ତାକୁ ଘେରିପଟେ ବେଢ଼ିଗଲେଣି ଯେପରି । ଗୁଣ ମାମୁଁଙ୍କ ପାଟି ଶୁଭୁଛି କାହା ଉଦ୍ଦେଶ୍ୟରେ—'ଆଜେ ବାଜେ ଲୋକ ଯେପରି କେହି ନ ଆସନ୍ତି । ହରି ରଖେ ଯାହାକୁ ତାକୁ ମାରେ କିଏ ? ଗୁଣନିଧି ଥିଲାଯାଏଁ ଅନ୍ୟାୟ ସେ ବରଦାସ୍ତ କରିବନି । ସେ ଶେଷ ରକ୍ତବିନ୍ଦୁ ଦେଇ ପ୍ରତିବାଦ କରିବ । ଦେଖିବି ଦାଶରଥି କିପରି ରାଜନୀତିରୁ ଫାଇଦା ଉଠେଇ ଯୁବଶକ୍ତିକୁ ନଷ୍ଟ କରି ନିଜକୁ ନେତା ବୋଲାଇବ । ମୁଁ ତାର ମୁଖା ଯଦି ନ ଖୋଲି ଦେଇଛି···ମୋର ତ ଆଉ କୋଠା ପିଟିବାର କି ମନ୍ତ୍ରୀ ହେବାର ଲୋଭ ନାହିଁ ଯେ ମୁଁ ଡରିଯିବି ତାକୁ । ଗୁଣନିଧି ସେବା କରିବାକୁ ଜନ୍ମ ନେଇଛି, ଜୀବନକୁ ଉତ୍ସର୍ଗ କରି ଆସିଛି ସେଇଥି ପାଇଁ ଯେତେବେଳେ···ରଖ ନାନୀ ଏ ଟଙ୍କା ରଖ । ମୋ ଋଣ ଭରିବୁ ନାହିଁ । ମୁଁ ଆସିବି ଖବରଦାର ବାଜେ ଲୋକ ଯେପରି ନ ଆସନ୍ତି ।"

ମହେଶ ଜାଣେ ଗୁଣମାମୁଁ ଭଲ ବକ୍ତୃତା ଦେଇ ଶହ ଶହ ଲୋକଙ୍କୁ ମୁଗ୍ଧ କରି ରଖିଥାନ୍ତି । ଏମିତି କ ଭେ' ଭେ କାନ୍ଦି ମଧ୍ୟ ପାରନ୍ତି । କଣ୍ଠରେ ବିଭିନ୍ନ ରସର ପ୍ରକାଶ କରିବାକୁ ସେ ସମର୍ଥ୍ୟ ନଥିନ୍ତି ନାହିଁ ।

ମହେଶ ଜାଣିଲା ସମସ୍ତେ ଫେରିଗଲେଣି, ଏମିତିକି ସେଇ କୋମଳ କଣ୍ଠୀ ନର୍ତ୍ତକି ମଧ୍ୟ । ତଥାପି ଆଖି ଖୋଲି ଚାହିଁବାକୁ ସାହସ ହେଉନାହିଁ । ବୋଉ କି ହେମର ମୁହଁ ଦେଖିବାକୁ ମଧ୍ୟ ଡ଼ର ମାଡ଼ୁଛି । ମନେ ହେଉଛି ସେ ଯେପରି କାହାକୁ ଚିହ୍ନି ନାହିଁ । ସେ ଯେପରି ଅନ୍ୟ ଏକ ଗ୍ରହର ମଣିଷ । ଭୁଲ କ୍ରମେ ଆସିଯାଇଛି ଏଠାକୁ । ମନେ ହେଉଛି ବୋଧେ ତା ଭିତରେ କିଏ ଜଣେ ମରିଯାଇଛି ଏବଂ ସେ ଲୋକକୁ ଠେଲି ଗାଡ଼ିରେ ପେଲି, ପେଲି ସେ ନିଜେ ମରିଯାଇଛି । ହୋଇପାରେ ସେ ବୋଧେ ମୋଟେ ଜନ୍ମ ହୋଇନି ଏ ପର୍ଯ୍ୟନ୍ତ କି କଣ ··ମା ପେଟର ଅନ୍ଧକାର ଭିତରେ ନିଜର ଜନ୍ମ ଯନ୍ତ୍ରଣାରେ ସେ ଅଣ ନିଃଶ୍ୱାସୀ ହୋଇଯାଇଛି ।

ଇଏ କିପରି କଥା ? ଝଡ଼ଟା ଯେପଟେ ପ୍ରବଳ ଯୋରରେ ପବନ ବହିବାର ଶବ୍ଦ କାନକୁ ଆସିଲେ ମଧ୍ୟ ଘର ଭିତରଟା ଏତେ ରୁଦ୍ଧ କାହିଁକି ହୋଇଯାଇଛି ? ଅଠା ଦେଇ ମୁଦାହେଲା ପରି ମହେଶର ଓଠଯୁଡ଼ା ଖୋଲିବା ପରିବର୍ତ୍ତେ ବନ୍ଦ ହୋଇଯାଉଥିଲା !!!



# କୁମ୍ଭଯୋନି

କୃଷ୍ଣ ଚରଣ ଚୂଡ଼ଦେବ

ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ମେଡ଼ିକାଲ କଲେଜ ହସପିଟାଲରୁ ବାହାରିଲେ । ସେମାନଙ୍କ ପଛରେ ଗାଇନକ୍ ପ୍ରଫେସର ଡକ୍ଟର ଦାସ୍ ।

ଶ୍ରୀମତୀ ମହାପାତ୍ରଙ୍କ କୋଳରେ ନବଜାତ ପୁତ୍ର ସନ୍ତାନ—ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିସ୍ମୟକର ଫଳଶ୍ରୁତି—ମଣିଷର ମେଧା ଓ ସୃଷ୍ଟି-ନୈପୁଣ୍ୟର ଅପୂର୍ବ ଫସଲ—ଏକ ଟେଷ୍ଟିଉବ୍ ବେବି ।"

ଶ୍ରୀମତୀ ମହାପାତ୍ରଙ୍କର ପ୍ରସୂତି-ପର ଶୀର୍ଣ୍ଣ ମୁଖମଣ୍ଡଳ ଶାନ୍ତ ଓ ପରିତୃପ୍ତ ଦେଖା ଯାଉଥିଲା । ମଳିନ ଅଧରରେ ଫୁଟି ଉଠୁଥିଲା ମଧୁର ହାସ୍ୟରେଖା । ଶ୍ରୀ ମହାପାତ୍ର ଏବଂ ଡକ୍ଟର ଦାସ ମଧ୍ୟ ହାସୋଜ୍ଜ୍ୱଳ ଦେଖା ଯାଉଥିଲେ ।

ପ୍ରଥମେ ସରକାରଙ୍କ ତରଫରୁ ସ୍ୱାସ୍ଥ୍ୟ ବିଭାଗର ଡ଼ିରେକ୍ଟର, । ଶ୍ରୀମତୀ ମହାପାତ୍ର ଏବଂ ଡ଼କ୍ଟର ଦାସଙ୍କୁ ପୁଷ୍ପସ୍ତବକ ପ୍ରଦାନ କରି ଅଭିନନ୍ଦନ ଜଣାଇଲେ ।

ହସପିଟାଲ୍ ବାହାରେ ଲୋକାରଣ୍ୟ । ସମସ୍ତ ମହାନଗରୀର ଜନତା ଯେପରି ସେଠି ସମବେତ ହୋଇଛନ୍ତି ପୃଥିବୀର ଏକ ପରମ ଆଶ୍ଚର୍ଯ୍ୟ ପ୍ରତ୍ୟକ୍ଷ ପୂର୍ବକ ନୟନ-ମନ ତୃପ୍ତ କରିବେ । ଶ୍ରୀମତୀ ମହାପାତ୍ରଙ୍କ କୋଳର ଶିଶୁ ପୁତ୍ରଟିକୁ ଦେଖିବାକ୍ଷଣି ବିସ୍ମୟ ମୁଗ୍ଧ ଜନତା ଜୟଧ୍ୱନି କରିବାରେ ଲାଗିଲେ ।

ଏ ଶିଶୁ ପୁତ୍ରଟି ଯେପରି ଏକ ସାଧାରଣ ନବଜାତକ ନୁହେଁ ! ଏହାର ଜନ୍ମ-ପ୍ରକ୍ରିୟା ଭଳି ଅଙ୍ଗ-ପ୍ରତ୍ୟଙ୍ଗର ଗଠନ ପ୍ରଣାଳୀରେ ମଧ୍ୟ ଯେପରି କିଛି ବିଶେଷତ୍ୱ ରହିଛି । ତେଣୁ ଏହାକୁ ଥରେ ନିକଟରୁ ଦେଖିବାର ଆଗ୍ରହ ଓ କୌତୂହଳ ଯେନ ଜନତା ଭିତରେ ଠେଲାପେଲା ଆରମ୍ଭ ହୋଇଗଲା ।

ପୋଲିସ୍ ହସ୍ତକ୍ଷେପ କରି ନ ଥିଲେ, । ସେହି ଜନସମାବେଶରେ ଶାନ୍ତି-ଶୃଙ୍ଖଳା ରକ୍ଷା କଷ୍ଟକର ହୋଇଆଆନ୍ତା ।

ସାମ୍ବାଦିକମାନେ ଶ୍ରୀ ଓ ଶ୍ରୀମତୀ ମହାପାତ୍ର ତଥା ଡ଼କ୍ଟର ଦାସଙ୍କୁ ବେଢିଗଲେ । ଅନ୍ତଃସତ୍ତ୍ୱା ଥିବା କାଳରେ ଶ୍ରୀମତୀ ମହାପାତ୍ରଙ୍କୁ ସାକ୍ଷାତ ଓ ପଚରା-ଉଚରା କରିବା ପାଇଁ ସେମାନଙ୍କୁ ଅନୁମତି ଦିଆଯାଇ ନ ଥିଲା । ବିଭିନ୍ନ ପ୍ରେସ୍‌କ୍ୟାମେରାର ଫ୍ଲାସ୍ ଲାଇଟ୍ ବିଜୁଳି ପରି ବାରମ୍ବାର ଚମକି ଉଠିଲା । ଟେଲିଭିଜନ କ୍ୟାମେରା ମଧ୍ୟ ଫଟୋ ନେବାରେ ଲାଗିଗଲା ।

ସମବେତ ଜନତାକୁ ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ଅଭିବାଦନ ଜଣାଇଲେ । ସାମ୍ବାଦିକମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବା ପାଇଁ ସେମାନଙ୍କୁ ସେଠାରେ କିଛି ସମୟ ଅଟକି ରହିବାକୁ ପଡ଼ିଲା । ତା'ପରେ ଡକ୍ଟର ଦାସଙ୍କଠାରୁ ବିଦାୟ ନେଇ ସେମାନେ ପୋଲିସ୍ ସାହାର୍ଯ୍ୟରେ ବହୁ କଷ୍ଟରେ ଭିଡ଼ ପାରି ହୋଇ ରାସ୍ତା ଉପରକୁ ଆସିଲେ । ରାସ୍ତା ଉପରେ ଶ୍ରୀ ମହାପାତ୍ରଙ୍କର ବାପା-ମାଆ ଓ ଆତ୍ମୀୟସ୍ୱଜନମାନେ କାର୍‌ରେ ଅପେକ୍ଷା କରି ରହିଥିଲେ ।

× × ×

"ମହାପାତ୍ର ମହଲ" ସେଦିନ ଆନନ୍ଦଉତ୍ସବରେ ମୁଖରି ହୋଇ ଉଠିଥିଲା । ବୃଦ୍ଧ ଶୀଳଧ୍ୱଜ ବହୁ ଦିନର ଅପେକ୍ଷା ପରେ ନାତିଟିଏ ପାଇ ବଂଶ ରକ୍ଷା ହେଲା ବୋଲି ଗଭୀର ବିଶ୍ୱାସରେ ଶାନ୍ତ ସମାହିତ ହୋଇ ବାରଣ୍ଡାରେ ବସିଥିଲେ ଏବଂ ଦରିଦ୍ରମାନଙ୍କୁ ଅନ୍ନବସ୍ତ୍ର ବଣ୍ଟନ କରାଯାଉଥିବାର ଦୃଶ୍ୟ ଦେଖୁଥିଲେ ବିମୁଗ୍ଧ ହୋଇ ।

ତାଙ୍କର ଏକମାତ୍ର ପୁତ୍ର ଶ୍ରୀ ଅମିତାଭ ମହାପାତ୍ର ବିଶ୍ୱବିଦ୍ୟାଳୟରେ ତୁଳନାତ୍ମକ ସାହିତ୍ୟ ବିଭାଗର ଅଧ୍ୟାପକ । ଆଠବର୍ଷ ତଳେ, ଏକଦା ଆପଣାର ସହପାଠିନୀ ମନୀଷା ଚୌଧୁରୀଙ୍କୁ ବିବାହ କରିଥିଲେ ମଧ୍ୟ ସେ ଏପର୍ଯ୍ୟନ୍ତ ଥିଲେ ନିଃସନ୍ତାନ । ତେଣୁ ବୃଦ୍ଧ ପିତାଙ୍କର ମନବେଦନାର ଅନ୍ତ ନ ଥିଲା । ଶ୍ରୀ ମହାପାତ୍ର କେତେଥର ପିତାଙ୍କୁ ବୁଝାଇଥିଲେ—ଏ ଯୁଗରେ ଅସ୍ତିତ୍ୱରକ୍ଷା ପାଇଁ ମଣିଷ ଘୋରତର ସଂଗ୍ରାମ କରୁଥିଲା ବେଳେ ବଂଶରକ୍ଷା ବଡକଥା ନୁହେଁ । କିନ୍ତୁ ବୃଦ୍ଧ

ଶିଳ୍ପପତିଙ୍କର ତାହା ହୃଦ୍‌ବୋଧ ହୋଇ ନ ଥିଲା । ଅମିତାଭ ପରେ ଏ ଧନ ସଂପଦ, ବିପୁଳ ଐଶ୍ୱର୍ଯ୍ୟ କାହାର ହେବ ? କିଏ ଭୋଗ କରିବ ? କାହିଁ ତାଙ୍କର ବଂଶଧର ? କିଏ ତାଙ୍କର ଉତ୍ତର ପୁରୁଷ ?

ହିଁ, ସେ ନାତିଟିଏକ ଶୁଦ୍ଧାନ୍ତ—ଶୁଦ୍ଧାନ୍ତ ପଣନାତି, ଅଣନାତି...... ତାଙ୍କରି ରକ୍ତଧାର ପୁରୁଷ ପୁରୁଷ ଧରି ଅନନ୍ତକାଳ ପର୍ଯ୍ୟନ୍ତ ପ୍ରବାହିତ ହେଉଥାନ୍ତି । ପୁଅ, ନାତି, ପଣନାତି ପ୍ରଭୃତିଙ୍କ ମଧ୍ୟରେ ସେ ଚିରଦିନ ବଞ୍ଚି ରହି ଥାଆନ୍ତୁ ।

ଉତ୍ତର ପୁରୁଷଙ୍କ ମଧ୍ୟରେ ଅମର ହୋଇ ରହିବା ତ ପ୍ରତ୍ୟେକ ମଣିଷର ଉଦଗ୍ର-କାମନା । ତାହାହିଁ ତ ଏକ ପ୍ରକାର ଆତ୍ମରକ୍ଷା ।—ବଂଶରକ୍ଷା ମଧ୍ୟରେ ଆତ୍ମବିସ୍ତାର ଓ ଆତ୍ମ ସଂରକ୍ଷଣ ।

ଶ୍ରୀ ମହାପାତ୍ରଙ୍କର ବୃଦ୍ଧା ଜନନୀ ମଧ୍ୟ ବଂଶରକ୍ଷା ପାଇଁ କମ୍ ବ୍ୟାକୁଳ ହେଉ ନ ଥିଲେ । ନାତିଟିଏ ପାଇ ବିଭିନ୍ନ ଓଷାବ୍ରତ, ବହୁ ଦିଅଁ ଦେବତା ପୂଜା ସେ ନିଷ୍ଠାପର ଭାବରେ କରିଚାଲିଥିଲେ ବର୍ଷ ବର୍ଷ କାଳ ।

ବୃଦ୍ଧ ପିତାମାତାଙ୍କୁ ମାନସିକ ଅଶାନ୍ତିରୁ ମୁକ୍ତ ଦେବା ପାଇଁ ଶ୍ରୀ ମହାପାତ୍ର ଉଦ୍ୟମରେ ହେଳା କରି ନ ଥିଲେ । ବିବାହଠାରୁ ଆଠବର୍ଷ ମଧ୍ୟରେ ସେ ନିଜର ତଥା ନିଜ ସ୍ତ୍ରୀଙ୍କର ବିଭିନ୍ନ ପ୍ରକାର ଡାକ୍ତରୀ ପରୀକ୍ଷା କରାଇଥିଲେ । ଶେଷରେ ମେଡ଼ିକାଲ କଲେଜର ଗାଇନିକ୍ ପ୍ରଫେସର ଡକ୍ଟର ଦାସ ଏବଂ ତାଂକର ସହକର୍ମୀଗଣ ବହୁ ପରୀକ୍ଷା ପରେ ମତ ଦେଲେ ଯେ--ସନ୍ତାନ ଉତ୍ପାଦନ ସକାଶେ ଶ୍ରୀ ମହାପାତ୍ରଙ୍କଠାରେ କୌଣସି ଦୋଷତ୍ରୁଟି ଦେଖାଯାଉ ନାହିଁ । କିନ୍ତୁ ଶ୍ରୀମତୀ ମହାପାତ୍ରଙ୍କର ଫେଲୋପିଆନ୍ ଟିଉବ୍ ଯୋଡ଼ିକ ଅକାମୀ ହୋଇ ପଡ଼ିଛି । ତେଣୁ ସେ ଗର୍ଭଧାରଣ କରିପାରୁ ନାହାନ୍ତି ।

ଆଉ ଉପାୟ କଣ ? ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ଭାବି ଭାବି କୌଣସି ଥଳକୂଳ ପାଇ ନ ଥିଲେ । ବୃଦ୍ଧ ଶିଳ୍ପପତି ଧରି ବସିଥିଲେ—ପୁଅକୁ ପୁଣି ଥରେ ବିବାହ କରାଇ ଘରକୁ ଆଉ ଗୋଟିଏ ବୋହୂ ଆଣିବେ । ବଂଶରକ୍ଷାର ତାହାହିଁ ଏବେ ଏକମାତ୍ର ଉପାୟ ।

ଶ୍ୱଶୁରଙ୍କ ଜିଦ୍‌ରେ ଶ୍ରୀମତୀ ମହାପାତ୍ର ବ୍ୟସ୍ତ ବ୍ୟସ୍ତ ହୋଇପଡ଼ିଥିଲେ । ସେଦିନ ସେ କାନ୍ଦିକାନ୍ଦି ନୟନ ଲୋତକରେ ଶ୍ରୀ ମହାପାତ୍ରଙ୍କ ବକ୍ଷ ଭିଜାଉଥିଲାବେଳେ ଶ୍ରୀମହାପାତ୍ର ତାଙ୍କୁ ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରି କହିଥିଲେ --ଏହା ହୋଇପାରେନା ମନିଷା, ମୋ ବକ୍ଷ ଭିତର ଆସନଟି ତ ତମେ ସଂପୂର୍ଣ୍ଣ ଅଧିକାର କରି ବସିଛ! ସେଠି ଆଉଜଣକ ପାଇଁ ସ୍ଥାନ କାହିଁ ? ଅଗତ୍ୟା ଏକ ଉପାୟର ପ୍ରସ୍ତାବ କରିଥିଲେ ଡ଼କ୍ଟର ଦାସ । ଉପାୟଟିର କଥା ବିସ୍ତୃତ ଭାବରେ ଶୁଣି ଶ୍ରୀ ଓ ଶ୍ରୀମତୀ ମହାପାତ୍ର ଉଭୟେ ଚମତ୍କୃତ ହୋଇଥିଲେ । ଶ୍ରୀମତୀ ମହାପାତ୍ରଙ୍କ ଡ଼ିମ୍ବାଶୟର ଗୋଟିଏଡ଼ିମ୍ବ ସହିତ ଶ୍ରୀମହାପାତ୍ରଙ୍କ ଶୁକ୍ରାଣୁ ଏକ ଟେଷ୍ଟିଟ୍ୟୁବ୍ ଭିତରେ ଏକତ୍ର କରି ଗର୍ଭାଧାନ କରାଯାଇ ପାରିବ । ସେହି ନିଷିକ୍ତ ଡ଼ିମ୍ବକୁ ଶ୍ରୀମତୀ ମହାପାତ୍ରଙ୍କ ଜରାୟୁ ମଧ୍ୟରେ ଅବସ୍ଥାପିତ କରାଯାଇ ସନ୍ତାନ ଉତ୍ପାଦନ କରିହେବ ।

ଏ ଉପାୟ ସଂପର୍କରେ ସନ୍ଦିଗ୍ଧମନା ଥିଲେ ହେଁ, ଉଭୟେ ଶ୍ରୀ ଓ ଶ୍ରୀମତୀ ମାହାପାତ୍ର ଏହାର ସଦୁପଯୋଗ କରି ସନ୍ତାନ ଲାଭ ନିକାଶେ ବ୍ୟଗ୍ର ହୋଇ ପଡିଥିଲେ । କିନ୍ତୁ ବୃଦ୍ଧ ଶିଳ୍ପପତିଙ୍କଠାରୁ ଆପତ୍ତିରସ୍ୱର ଶୁଣାଯାଇଥିଲା—ଏହା କି ଏକ ମାନବୀୟ ବ୍ୟାପାର ? ପ୍ରାକୃତିକ ପ୍ରକ୍ରିୟାକୁ ଲଙ୍ଘନ କଲେ, କ'ଣ ସୁଫଳ ମିଳେ ? ନା, ନା, ଏପରି ପୈଶାଚିକ ଉପାୟ ଅବଲମ୍ବନ କରି ଆମର ବଂଶରକ୍ଷା କରାଯାଇ ନ ପାରେ ।

ପୁଂସବନ ତଥା ମଣିଷ—ଜନ୍ମର ପାରଂପରିକ ସଂସ୍କାର ଓ ନୈତିକ ମୂଲ୍ୟ ବୋଧ କ୍ଷୁର୍ଣ୍ଣ ହେବାରୁ ବୃଦ୍ଧଶିଳ୍ପପତି ବିଦ୍ରୋହୀ ହୋଇଉଠିଥିଲେ । କିନ୍ତୁ ଏହି ବୈଜ୍ଞାନିକ ଅଭିଜ୍ଞତା ଦ୍ୱାରା ସଂସ୍କାର ଭଙ୍ଗ ହେଉ ନଥିବା ବିଷୟରେ ତାଙ୍କର କୁଳ—ପୁରୋହିତଯୁକ୍ତି କରିଥିଲେ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଘଟନ—ଘଟନ —ପଟୀୟସୀ ଶକ୍ତି ଏବଂ ଅଭୂତପୂର୍ବ ସିଦ୍ଧି ବିଷୟ ବୁଝାଇ ପୁଅ ବୋହୂ ଦୁହେଁ ମଧ୍ୟତାଙ୍କୁ ଶାନ୍ତ କରାଇଥିଲେ ।

କଥା ରହିଥିଲା—ଲେବୋରେଟରୀରେ ପୁଅ—ବୋହୂଙ୍କ ସମକ୍ଷରେ ହିଁ ଡ଼କ୍ଟର ଦାସ ସେମାନଙ୍କ ଶୁକ୍ରାଣୁ ଏବଂ ଡିମ୍ବ ଏକତ୍ର କରି ଗର୍ଭାଧାନ କରାଇବେ ଏବଂ ସନ୍ତାନ ଜନ୍ମ ନ ହେଲା ପର୍ଯ୍ୟନ୍ତ ଏହି ବୈଜ୍ଞାନିକ କୌଶଳ ସବ ସାଧାରଣଙ୍କ ଠାରୁ ଗୋପନ କରି ରଖିବେ ।

ତାପରେ ଆରମ୍ଭ ହୋଇଥିଲା—ଡ଼କ୍ଟର ଦାସ ଏବଂ ତାଙ୍କର ସହକର୍ମୀଙ୍କ ଆପ୍ରାଣ ଓ ଚମତ୍କାରପ୍ରଦ ସାଧନା । ହସ୍‌ପିଟାଲ୍‌ର ଲେବୋରେଟରୀରେ ଏକ ସ୍ୱତନ୍ତ୍ର କକ୍ଷ ମଧ୍ୟରେ ଶ୍ରୀମତୀ ମହାପାତ୍ରଙ୍କୁ ସକଳ ପ୍ରକାର ମେଡ଼ିକାଲ୍‌, ପରୀକ୍ଷା ମଧ୍ୟରେ ରଖାଗଲା । ଶ୍ରୀମହାପାତ୍ର ମଧ୍ୟ ତାଙ୍କର ପାଖେ—ପାଖେ ଅସୀମ ଉଦ୍‌ବେଗରେ ଜଗି ରହିଲେ । ଠିକଣା ବେଳରେ ଅପରେସନ୍ ଦ୍ୱାରା ଡ଼କ୍ଟର ଦାସ ଶ୍ରୀମତୀ ମହାପାତ୍ରଙ୍କ ଡ଼ିମ୍ବାଶୟରୁ ଅତି ସତର୍କତାର ସହିତ ଏକ ପୂର୍ଣ୍ଣ ବିକଶିତ ଡ଼ିମ୍ବ ବାହାର କରି ଆଣିଲେ । ସଙ୍ଗେ ସଙ୍ଗେ ଶ୍ରୀମହାପାତ୍ରଙ୍କ ଶୁକ୍ରାଶୟରୁ କିଛି ସୁସ୍ଥ ସବଳ ଶୁକ୍ରାଣୁ ମଧ୍ୟ ବାହାର କଲେ । ସ୍ୱତନ୍ତ୍ର ଭାବେ ନିର୍ମିତ ଏକ ଟେଷ୍ଟିଉବ୍ ମଧ୍ୟରେ ସେହି ଡ଼ିମ୍ବ ଓ ଶୁକ୍ରାଣୁଟିକୁ ଏକତ୍ର ମିଶାଇ ଦେଲେ । ଶୀତତାପ— ନିୟନ୍ତ୍ରିତ ଏକ ଅନ୍ଧକାରମୟ ପ୍ରକୋଷ୍ଠରେ ସେହି ଟେଷ୍ଟିଉବ୍‌ଟି ରଖି ଡ଼କ୍ଟର ଦାସ ପ୍ରବଳ ଉତ୍କଣ୍ଠା ଓ ଉତ୍ତେଜନା ଘେନି ଦୀର୍ଘ ଗୁରୁଦିନ କାଳ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ତାହାପରୀକ୍ଷା କରିବାରେ ଲାଗିଲେ ।

କ୍ରମଶଃ ସେହି ଯୁଗାନ୍ତକାରୀ ପରମ ବିସ୍ମୟକର ବ୍ୟାପାର ସଂଘଟିତ ହେଲା । ମହାପାତ୍ର ପରିବାରର ସୌଭାଗ୍ୟକୁ ଡକ୍ଟର ଦାସଙ୍କ ଆବେଗ ଉତ୍କଣ୍ଠାର ଅବସାନ ଘଟାଇ ଟେଷ୍ଟିଉବ୍ ମଧ୍ୟରେ ଦେଖାଗଲା—ଗୋଟିଏ ଭ୍ରୂଣର ଆଦ୍ୟାବସ୍ଥା— ମାନବ ସୃଷ୍ଟିର କମଳ କଳିକା ।

ଡ଼କ୍ଟର ଦାସଙ୍କର ସେତେବେଳେ ଆନନ୍ଦ —ଉତ୍ସାହ କହିଲେ ନ ସରେ । ଏତେଦିନକେ ପ୍ରକୃତିର ଏକ ବିରାଟ ଗୋପନ ରହସ୍ୟ ଉଦ୍‌ଘାଟିତ ହେଲା । ମାନବ - ଜନ୍ମର କୁଞ୍ଚିକା ଆଧୁନିକ ବିଜ୍ଞାନ କରଗତ କଲା ।

ସେହି ସମୟରେ ଶ୍ରୀମତୀ ମହାପାତ୍ରଙ୍କଠାରେ ନିୟମିତ ହରମୋନ ପ୍ରୟୋଗ କରାଯାଇଥିଲା ଏବଂ ତାଙ୍କର ଶାରୀରିକ କ୍ରିୟା—ପ୍ରତିକ୍ରିୟା ସତର୍କତାର ସହ ନିରୀକ୍ଷଣ କରାଯାଉଥିଲା । ଭ୍ରୂଣର ନିରାପଦ ନିବାସ ଲାଗି ତାଙ୍କର ଜରାୟୁ ଭଲଭାବରେ ପ୍ରସ୍ତୁତ ହୋଇଗଲା ପରେ ଡ଼କ୍ଟର ଦାସ ଟେଷ୍ଟିଉବ୍‌ର ଭ୍ରୂଣକୁ ଆଣି ସଯତ୍ନ ତାହା ମଧ୍ୟରେ ସଂସ୍ଥାପନ କରିଦେଲେ ।

ଏହିଠାରୁ ଶ୍ରୀମତୀ ମହାପାତ୍ର ପ୍ରକୃତ ଅର୍ଥରେ ହେଲେ ଗର୍ଭବତୀ । ନିଜ ଦେହରେ ସମସ୍ତ ବୈଜ୍ଞାନିକ ଅଭିକ୍ରିୟାର ଯନ୍ତ୍ରଣା ସେ ହସ ହସ ମୁଖରେ

ସନ୍ଧ୍ୟା କରି ନେଇଥିଲେ । ମନ ତାଙ୍କର ପକ୍ଷୀରାଜ ଘୋଡ଼ା ପରି ଛୁଟି ଯାଉଥିଲା କାହିଁ କୁଆଡ଼େ ସ୍ୱପ୍ନ—ରାଜ୍ୟକୁ—ସେ ଯେପରି ସ୍ୱର୍ଗୀୟ ନନ୍ଦନକାନନର ମନଭୁଲା ଶୋଭା ଓ ସୁରଭି—ପରିପୂର୍ଣ୍ଣ ପରିବେଶ ମଧ୍ୟରେ ବିଚରଣ କରୁଛନ୍ତି ନିଜ ସ୍ୱାମୀଙ୍କ ସହ । ସ୍ୱାମୀଙ୍କ କୋଳରେ ଥିବା ଶିଶୁ ପୁତ୍ରଟି ତାଙ୍କ କୋଳକୁ ଆସିବା ଲାଗି ବାରମ୍ବାର ହାତ ବଢ଼ାଉଛି । ସେ କିନ୍ତୁ ପୁତ୍ରକୁ ନ ନେଇ ରକ୍ତ ବର୍ଣ୍ଣର ଫୁଲଟିଏ ଦେଖାଇ ତାକୁ ଭୁଲାଇବାରେ ଲାଗିଛନ୍ତି । ଶ୍ରୀ ମହାପାତ୍ର ହସି ହସି ତାଙ୍କୁ କହୁଛନ୍ତି—ସେତ ମାଆର ପୁଅ ! ମୋ କୋଳରେ ରହିବ କାହିଁକି ?

ଶ୍ରୀମତୀ ମହାପାତ୍ର ଉତ୍ତରଦେଉଛନ୍ତି—ସେ ବାପା ଓ ମାଆ ଉଭୟଙ୍କର ପୁଅ ବାପ କୋଳରେ ଥିଲା, ପୁଣି ମଆ କୋଳକୁ ଆସିବା ପାଇଁ ଚାହୁଁଛି ।

ମୁଗ୍ଧ ବିହ୍ୱଳ ଚିତ୍ତରେ ଦୁହେଁ ଶିଶୁ ପୁତ୍ରଟିକୁ ଧରି ସେହି ସ୍ୱପ୍ନରାଇଜରେ ଚାଲିଛନ୍ତି ଏବଂ ଚାଲିଛନ୍ତି······

ଭୃଣ-ସଂସ୍ଥାପନ ପରେ ସବୁ ବିଷୟ ସ୍ୱାଭାବିକ ଭାବରେ ଚାଲିବାରୁ ଡ଼କ୍ଟର ଦାସ ଗୋଟିଏ ସ୍ୱସ୍ତିର ନିଶ୍ୱାସ ପକାଇ ଶ୍ରୀ ଓ ଶ୍ରୀମତୀ ମହାପାତ୍ରଙ୍କ ଉଦ୍ଦେଶ୍ୟରେ ହସି ହସି କହିଥିଲେ—କାର୍ଯ୍ୟର ପ୍ରାରମ୍ଭଟି ଯେତେବେଳେ ସନ୍ତୋଷଜନକ ହୋଇଛି; ପରିଣତିଟି ସେହିପରି ସଫଳ ହେବ ବୋଲି ମୋର ବିଶ୍ୱାସ ।

ଶ୍ରୀ ମହାପାତ୍ର ଡ଼କ୍ଟର ଦାସଙ୍କୁ ଅଭିନନ୍ଦନ ଜଣାଇ କହିଲେ—ତାହା ଆପଣଙ୍କ ଅଦ୍ଭୁତ କୃତିତ୍ୱର ପରିଚାୟକ । ଆପଣଙ୍କର ନିଷ୍ଠାପର କ୍ଳାନ୍ତିହୀନ ସାଧନା ମାନବ—ସଭ୍ୟତାର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ରୂପେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସେତିକିବେଳେ ଶ୍ରୀ ମହାପାତ୍ରଙ୍କ ପିତା ବୃଦ୍ଧ ଶିଳ୍ପପତି ବାହାରେ ଅପେକ୍ଷା କରୁଥିବାର ସମ୍ବାଦ ଆସି ପହଞ୍ଚିଥିଲା । ଶ୍ରୀ ମହାପାତ୍ରଙ୍କୁ ସାଙ୍ଗରେ ନେଇ ଡ଼କ୍ଟର ଦାସ ବାହାରକୁ ଯାଇ ବୃଦ୍ଧ ଶିଳ୍ପପତିଙ୍କୁ ସାକ୍ଷାତ କଲେ ଏବଂ ସେ ପର୍ଯ୍ୟନ୍ତ ସକଳ ଅଭିଜ୍ଞତା ଠିକ୍ ଭାବରେ ଚାଲିଛି ବୋଲି ଜଣାଇଲେ । ବୃଦ୍ଧ ଆପଣା କପାଳରେ ଯୋଡ଼ ହସ୍ତ ଛୁଆଁଇ କହି ପକାଇଲେ—ସବୁ ସେହି ଈଶ୍ୱରଙ୍କ ଇଚ୍ଛା ! ଡ଼କ୍ଟର ଦାସ ପ୍ରକାଶ କଲେ—ଆପଣମାନଙ୍କର କାମନା-ବାସନା କ'ଣ ମୁଁ ଜାଣେନା । କିନ୍ତୁ ମହାପାତ୍ର ପରିବାରର କୁଳନନ୍ଦନ ଆସୁଥିବାର ସୂଚନା ମୁଁ ଏବେ ଆପଣମାନଙ୍କୁ ଦେଇପାରେଁ ।

ଶ୍ରୀ ମହାପାତ୍ର ପଚାରିଲେ—ଆପଣ କ'ଣ ଭ୍ରୂଣଟିଏ ଲିଙ୍ଗ ଜାଣି ପାରିଛନ୍ତି ? ଡକ୍ଟର ଦାସ କହିଲେ – ଟେଷ୍ଟିଉବ୍ ମଧ୍ୟରୁ ତାହା ଜାଣିବା ସମ୍ଭବ ହୋଇନି । ଭବିଷ୍ୟତରେ ଏ ଦିଗରେ ଅଧିକ ଗବେଷଣା ଓ ପରୀକ୍ଷା-ନିରୀକ୍ଷା ହେଲେ, ପିତାମାତାଙ୍କର ଇଚ୍ଛା ଅନୁଯାୟୀ 'ଟେଷ୍ଟିଉବ୍ ବେବି'ର ଲିଙ୍ଗ ନିରୂପଣ ମଧ୍ୟ ସହଜସାଧ୍ୟ ହେବ ।

ତା'ପରେ ଦୀର୍ଘ ନଅ ମାସର - ବ୍ୟାକୁଳ ପ୍ରତୀକ୍ଷା । ଡକ୍ଟର ଦାସ ଏବଂ ତାଙ୍କର ସହକର୍ମୀଗଣ ସେ ଅସୀମ ଧୈର୍ଯ୍ୟ ଓ ସତର୍କତାର ସହିତ ଅନ୍ତଃସତ୍ତ୍ୱା ଶ୍ରୀମତୀ ମହାପାତ୍ରଙ୍କୁ ସ୍ତରେ ସ୍ତରେ ପରୀକ୍ଷା କରି ଚାଲିଥିଲେ, । ଶିଳ୍ପପତି ମହାପାତ୍ରଙ୍କ ପରିବାର ସେହିପରି ଆଶାୟୀ ପ୍ରାଣରେ ନବଜାତକ କୁଳନନ୍ଦନର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ।

ଶେଷରେ ସେହି ଶୁଭଦିନ ସମାଗତ ହେଲା । ନିର୍ଦ୍ଦିଷ୍ଟ ଦିନ ସ୍ୱାଭାବିକ ଭାବରେ ଶ୍ରୀମତୀ ମହାପାତ୍ରଙ୍କ ଗର୍ଭରୁ ଭୂମିଷ୍ଠ ହେଲା—ବହୁ ପ୍ରତୀକ୍ଷିତ ପୁତ୍ର ସନ୍ତାନ—ପୃଥିବୀର ପରମ ଆଶ୍ଚର୍ଯ୍ୟ "ଟେଷ୍ଟିଉବ୍ ବେବି" ।

X X X

ବୃଦ୍ଧ ଶିଳ୍ପପତି ମହାଆନନ୍ଦରେ ଶିଶୁପୁତ୍ରକୁ କୋଳକୁ ଟେକିନେଲେ । ପୃଥିବୀର ଅଷ୍ଟଐଶ୍ୱର୍ଯ୍ୟ ଯେପରି ସେ ଆପଣା ହାତ ମୁଠାରେ ପାଇ ପାରିଛନ୍ତି । ଏଣିକି ସେ ନିଶ୍ଚିନ୍ତରେ ଆରପାରିକି ବାଟ କାଟିପାରିବେ । ବୃଦ୍ଧ ଅତି ଶରଧାରେ ନାତିଟିର ନାମ ରଖିଲେ—'ପରମାନନ୍ଦ' । ବାପ-ମାଆ ନିଜ ପୁଅର ଯୁକ୍ତିଯୁକ୍ତ ନାମଟିଏ ବାଛିଲେ—'ବିଜ୍ଞାନ-ବିଭୂତି' ।

ପାରଂପାରିକ ଚନ୍ଦ୍ରକଳା ପରି ନୁହେଁ, ବିଜ୍ଞାନର ଦ୍ରୁତ କ୍ରାନ୍ତିକାରୀ ପ୍ରଗତି ପରି ଶିଶୁପୁତ୍ରଟି କ୍ରମଶଃ ସ୍ୱାଭାବିକ ରୀତିରେ ବଢିବାରେ ଲାଗିଲା । କେବଳ ଡ଼କ୍ଟର ଦାସ ନୁହନ୍ତି, ବିଶ୍ୱର ବିଭିନ୍ନ ବିଶେଷଜ୍ଞ ଡାକ୍ତରମାନେ ଆସି ସତର୍କ ଦୃଷ୍ଟିରେ ତାହାର ଅଭିବୃଦ୍ଧି କରିବାରେ ଲାଗିଲେ ।

ବିଜ୍ଞାନ-ବିଭୂତି ମାତ୍ର ପାଞ୍ଚ ମାସ ବୟସରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲା, ଛଅ ମାସ ବୟସରେ ଚାଲି ଶିଖିଲା ଏବଂ ଅଢେଇ ବର୍ଷ ବୟସରୁ ପାଠ-

ପଢ଼ାରେ ମନୋନିବେଶ କଲା । ବୟୋବୃଦ୍ଧିର ଦ୍ରୁତ ଗତିରେ ତାହାର ଶାରୀରିକ ଓ ମାନସିକ ବିକାଶ ହେବାରେ ଲାଗିଲା । କିଶୋର ଅବସ୍ଥାରୁ ହିଁ ତାହାର ଅସାଧାରଣ ମେଧାଶକ୍ତିର ପରିଚୟ ମିଳିଲା । ସମଗ୍ର ମହାନଗରୀରେ ପଢ଼ାଶୁଣା ବକ୍ତୃତା, ଅଭିନୟ, କ୍ରୀଡ଼ା-କୌତୁକ ସବୁଥିରେ ସେ ହେଲା ଅଦ୍ୱିତୀୟ । ମାତ୍ର ଚଉଦ ବର୍ଷ ବୟସରେ ସେକେଣ୍ଡାରୀ ବୋର୍ଡର ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ସେ ପୂର୍ବର ସମସ୍ତ ରେକର୍ଡ ଭଙ୍ଗ କରି ପ୍ରଥମ ସ୍ଥାନ ଅଧିକାର ପୂର୍ବକ ଉତ୍ତୀର୍ଣ୍ଣ ହେଲା ।

ବିଶେଷଜ୍ଞ ବିଜ୍ଞାନୀମାନେ ତାହାର ଅସାଧାରଣ ମାନସିକ ଓ ଶାରୀରିକ ଶକ୍ତି ଦେଖି ଚମତ୍କୃତ ହେଲେ । ଏହି ନୂତନ ବୈଜ୍ଞାନିକ ଅଭିଜ୍ଞିୟାର କୁଫଳ ସଂପର୍କରେ ସେମାନଙ୍କ ମନରେ ଯେଉଁ ଆଶଙ୍କା ଥିଲା, ତାହା ଦୂରୀଭୂତ ହୋଇଗଲା ।

ଗର୍ବ ଓ ଆନନ୍ଦରେ ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ରଙ୍କ ଗ୍ରୀବା କୁଣ୍ଡେ ମୋଟ ହୋଇ ଉଠିଲା ।

ସମଗ୍ର ଜାତି ବିଜ୍ଞାନ-ବିଭୂତିର ଅପୂର୍ବ ମେଧା ଓ ଶାରୀରିକ ସାମର୍ଥ୍ୟରେ ମୁଗ୍ଧ ଚକିତ ହୋଇ ପଡ଼ିଲା । ବିଶ୍ୱର ମଙ୍ଗଳ ପାଇଁ ବିଜ୍ଞାନ-ବିଭୂତି ଯେପରି ଗୋଟିଏ ଗଣ୍ଡୁଷରେ ସମୁଦ୍ର ଚଳୁ କରିବାକୁ ପ୍ରସ୍ତୁତ ହେଲା । ବିନ୍ଧ୍ୟାଚଳ ପରି ସମାଜର ଦୁର୍ଜୟ ଶତ୍ରୁର ମସ୍ତକ ଅବନତ କରାଇବା ଲାଗି ଯେପରି ସେ ଧାରଣ କଲା ଅସୀମ ଶକ୍ତି-ସାହାସ ! ସେ ଯେପରି ଜାତୀୟ ଗଗନ ମଣ୍ଡଳରେ କୁମ୍ଭଯୋନିର ଜ୍ୟୋତି !!

# ମୁଖ୍ୟ-ଅତିଥି

ରମେଶ ଚନ୍ଦ୍ର ଧଳ

ଆମ ଦୁହିଁଙ୍କର ପରିଚୟ କାହାଣୀ ଅତି ବିଚିତ୍ର ଥିଲା । ସେଦିନ ଅସ୍ବାଭାବିକ ବର୍ଷା ହୋଇଥିଲା ଏବଂ ସେ ବର୍ଷାରୁ ସାମାନ୍ୟ ରକ୍ଷା ପାଇବା ଲାଗି ଆସି ସେ ମୋ ଦୋକାନ ନିକଟରେ ଠିଆ ହୋଇଥିଲେ । ମୁଁ କହିଥିଲି, ମଉସା ଆଉ ଟିକେ ଭିତରକୁ ଚାଲି ଆସନ୍ତୁ । ଓଦା ହେଉଛନ୍ତି କାହିଁକି ? ମଉସା ଡାକଶୁଣି ସେ ସାମାନ୍ୟ ବିସ୍ମିତ ତଥା ଉଲ୍ଲସିତ ହୋଇ ଉଠିଥିଲେ । ତା'ପରଠୁ ଆମ ଦୁହିଙ୍କ ମଧ୍ୟରେ ଆନ୍ତରିକତା ଧୀରେ ଧୀରେ ବୃଦ୍ଧି ପାଇଥିଲା । ଘନିଷ୍ଠରୁ ଘନିଷ୍ଠତର ହୋଇଥିଲା । ସେ ଯେତେବେଳେ ଜାଣିଲେ ଯେ ମୁଁ ଜଣେ ବେକାର ଗ୍ରାଜୁଏଟ୍, କୌଣସି କାମ ନ ପାଇ ଏଇ ପାନ ଦୋକାନ ଦେଇଛି । ସେ ମୋତେ କୁଣ୍ଢାଇ ପକାଇଲେ । ମୋ ପିଠିରେ ହାତ ଆଉଁଷାଇ କେତେ ଯେ ଧନ୍ୟବାଦ ଦେଲେ ତାହା କହି ପାରିବି ନାହିଁ । କହିଲେ ଧିକ୍ ସେ ନଉକରିକୁ । ମୁଁ ବର୍ତ୍ତମାନ କର୍ମ-ଯୋଗାଣ ଅଫିସ ବାଟ ଦେଇ ଫେରୁଛି । କେତେ ଯେ ଯୁବକ-ଯୁବତୀ କାମ ପାଇଁ ନାମ ରେଜିଷ୍ଟ୍ରି କରିବାକୁ ଧାଡ଼ି ଲମ୍ବାଇଛନ୍ତି । ଆଖି ପାଉନି । ଧିକ୍ ଆମକୁ ଧିକ୍ ଆମର ଏ ସରକାରକୁ । ଏ ପର୍ଯ୍ୟନ୍ତ ସମସ୍ତଙ୍କୁ କାମ ଯୋଗାଣ ହୋଇ ପାରିଲା ନାହିଁ । ଧନ୍ୟ କହିବି ଏ ଜାତିକୁ ନେତାଙ୍କୁ । ଯୋଉମାନେ ମୁହାଁଙ୍କୁ । କେଡ଼େ କେଡ଼େ ଲମ୍ବ ଲମ୍ବ କଥା କହୁଛନ୍ତି ।

ସେ ଦିନ ତାଙ୍କ କଥାବାର୍ତ୍ତା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଅଧିକ ମୁଗ୍ଧ କରିଥିଲା ମୋତେ ତାଙ୍କର ବେଶଭୂଷା । ତାଙ୍କ ଜୀବନର ଦୃଷ୍ଟିଭଙ୍ଗୀ । ଅଣ୍ଟୁ ଲୁଚୁ ନ ଥିବା ତାଙ୍କର ଲୁଗାପିନ୍ଧା ଓ ହାତଧରା ଯଷ୍ଟି ଖଣ୍ଡ ମୋତେ ମୁଗ୍ଧ କରିଥିଲା । ସରଳ ସୁନ୍ଦର କର୍ମପ୍ରବଣ ବୃଦ୍ଧ ସେ । ଆଉ ଅଧିକ ଦିନ ନୁହେଁ । ପାଚିଲା ପତର କେଉଁ ଦିନ ଝଡ଼ି ପଡ଼ିବେ । ତେଣୁ ଆଉ ଯେତେଦିନ ରହିଲା ସେତିକି ଦିନ ସମାଜର ସେବାକରିଯିବା ଲାଗି ସେ ପ୍ରତିଜ୍ଞାବଦ୍ଧ । ଗାଁରେ ଗୋଟିଏ ଲାଇବ୍ରେରୀ ପ୍ରତିଷ୍ଠା କରିବାର ଝୁଙ୍କ୍‌ରେ ସେ ଥିଲେ ଏକାନ୍ତ ପାଗଳ ।

ସେ କହନ୍ତି ପୁସ୍ତକର ଭୂମିକା ଜୀବନଗଠନ ନିମନ୍ତେ ଯେ କୌଣସି ପ୍ରବୀଣ ପ୍ରାଜ୍ଞର ସାହଚର୍ଯ୍ୟ ତୁଳନାରେ ଅତି ଅଧିକ । ବହୁଗୁଣରେ ମୂଲ୍ୟବାନ ।

ପରିଚିତ ହୋଇଗଲା ପରେ ସେ ଥରେ ମୋତେ କହିଥିଲେ, ସଚ୍ଚି ତୁମେ ଦୋକାନରେ ପାନ ବିକୁଚ ସିଗାରେଟ୍ ବିକୁଚ, ଅନ୍ୟାନ୍ୟ ଷ୍ଟେସନାରୀ ଜିନିଷ ବିକୁଛ—ଉନ୍ନତ ପ୍ରତିଷ୍ଠିତ ଲେଖକମାନଙ୍କର ଶସ୍ତା ଦାମର କେତେଖଣ୍ଡ ବହି ଏ ଦୋକାନରେ ରଖି ବିକଲେ ଭଲ ହୁଅନ୍ତା ନାହିଁ ? କ'ଣ କହୁଛ !

ଜଣେ ସାଧାରଣ ଲୋକ ମୋତେ ଯେ ଏପରି ସାଧୁ ପ୍ରସ୍ତାବ ଦେଇ ପାରନ୍ତି ମୁଁ କେବେ ସ୍ୱପ୍ନରେ ସୁଦ୍ଧା ଭାବି ପାରି ନ ଥିଲି । ମୋ ଶ୍ରେଷ୍ଠ ପାନଦୋକାନଟି ସାଂସ୍କୃତିକ ବ୍ୟାପାର ବିଭାଗଠାରୁ କେତେ କମ୍ ଦୂରରେ । ପାନ ପାଇଁ ତାଙ୍କ ସେକ୍ରେଟାରୀଠାରୁ ପିଅନ ପର୍ଯ୍ୟନ୍ତ ଆସନ୍ତି । ମନ୍ତ୍ରୀ ତାଙ୍କ ଅଫିସକୁ ଆସିବା ବେଳେ କେବେ କେବେ ତାଙ୍କ ଲାଗି ତାଙ୍କ ପିଅନ ଆସେ ପାନ ନେବାକୁ । ବେଳେ ବେଳେ ମୋ ଦୋକାନ ପାଖରେ ମନ୍ତ୍ରୀ ଗାଡ଼ି ଅଟକାଇ ପାନ ନେବାକୁ ଡ୍ରାଇଭରକୁ ପଠାନ୍ତି । କାହିଁ ସେ କମ୍ପା ତାଙ୍କ ଷ୍ଟାଫ୍ ମୁଁ କ'ଣ ଦୋକାନରେ ବିକଲି ନ ବିକଲି, ବହି ବିକଲେ ଅନ୍ୟମାନେ ଉପକୃତ ହୁଅନ୍ତେ ବା ନ ହୁଅନ୍ତେ ସେ ନେଇତ କେବେ ବ୍ୟସ୍ତ ହୁଅନ୍ତି ନାହିଁ, ଏହି ବୃଦ୍ଧଲୋକଟିର କ'ଣ ଯାଉଛି, ସେ ଏସବୁ ନେଇ ଏତେ ବ୍ୟସ୍ତ କାହିଁକି ବୋଲି ଆପଣାକୁ ପଚାରି ଉତ୍ତର ପାଏ ନାହିଁ । ସତରେ ଅତି ତାଜୁବ ଲୋକ-ଏ ।

ଦିନ ଗଡ଼ିଚାଲିଲା । ଆମର ସମ୍ପର୍କ, ଆନ୍ତରିକତା ଅଧିକ ବୃଦ୍ଧି ପାଇଲା । ତାଙ୍କ ଜୀବନର ଲୁଚକପେଡ଼ି ସେ ମୋ ନିକଟରେ ମୁକୁଳା ରଖିବାରେ ସାମାନ୍ୟ ସଂକୋଚ ପ୍ରକାଶ କଲେ ନାହିଁ । ମୋ ପାନ ଦୋକାନଟି ତାଂକର ଏକ ପ୍ରକାର ବିଶ୍ରାମସ୍ଥଳୀ ହୋଇଗଲା । ସମସ୍ତ ଓ ପରିସ୍ଥିତି ଏପରି ଅବସ୍ଥାରେ ଆସି ପହଞ୍ଚିଲା ଯେ ତାଂକ ପରିଚିତ ଲୋକମାନେ ସେ ରାଜଧାନୀକୁ ଆସିଛନ୍ତି କି ନାହିଁ ଆସି ମୋ'ଠାରୁ ବୁଝିଲେ ।

ତାଂକ ଲାଇବ୍ରେରୀ ପାଇଁ ତାଙ୍କୁ କେହି ଖଣ୍ଡିଏ ବହି ଉପହାର ଦେଲେ ବା ସାମାନ୍ୟ ଆର୍ଥିକ ସାହାଯ୍ୟ ଦେଲେ ସେ ଯେ ସତରେ କେତେ ଆନନ୍ଦିତ ହୁଅନ୍ତି; ଦାତାଲୋକଟିର କେତେ ପ୍ରଶଂସା କରନ୍ତି ମୁଁ, ତାହା ବୁଝାଇ କହିବାକୁ ଭାଷା ପାଏ ନାହିଁ ।

ଜୁନର ମୁଣ୍ଡ ଫଟା ଖରା । ଖରା ହାଙ୍ଗକୁ ଅସହ୍ୟ ଝାଞ୍ଜି । ପ୍ରାଣ ପଳେଇ ଯିବ । ନକଟବର୍ତ୍ତୀ ଅଫିସ ଗୁଡ଼ିକର କବାଟ ଝରକା ପୁରାବନ୍ଦ । କେଉଁଠି କେଉଁଠି କାଚ ଝରକା ଉପରେ ଆଲୋକର ପଥରୁଦ୍ଧ କରିଦେବା ଲାଗି କଳାରଙ୍ଗ କାଗଜ ମଖାଯାଇଛି । କେଉଁଠି ଅବା ବେଣାଚେର ପରଦା ଉପରେ ପାଣି ଛିଞ୍ଚାଯାଉଛି । ସତରେ ଓଦା ବେଣାଚେରର ବାସ୍ନା କେତେ ଚମତକାର, ମୂଲ୍ୟବାନ । କିନ୍ତୁ ବାପୁଡ଼ା ପାନଦୋକାନର ଏସବୁଥିରୁ ମିଳେ କଣ ? ମୁଁ ବେଣାଚେର ଝୁଲେଇ ପାରିବ ନାହିଁ କିମ୍ବା କବାଟ ବନ୍ଦ କରି ଦୋକାନ ଭିତରେ ବିଶ୍ରାମ ନେଇ ପାରିବ ନାହିଁ । ଏଠି ଦୋକାନରୁ ଖାଲିହାତରେ ଗଲେ ଘରେ ହାଣ୍ଡି ମାଙ୍କଡ଼ଚଢ଼ା ମାରିବ । କେବଳ ମୁଁ ନୁହେଁ ଘରେ ମୋର ରୁଗ୍ଣ ମା ଓ ମୋତେ ନିର୍ଭର କରି ଚଳୁଥିବା ମୋ ସାନ ଭାଇଭଉଣୀ ସମସ୍ତେ ଉପବାସରେ ରହିଯିବେ । ତେଣୁ ମୁଁ ଦୋକାନ ଦରଆଉଜା କରି ଗରାଖ ଅପେକ୍ଷାରେ ଥାଏ ।

ଝାଳ ନାଳ ହୋଇ ସେ ଆସି ପହଞ୍ଚିଲେ ଡାକିଲେ 'ସଚି ଅଛ ? ମୁଁ ଭିତରୁ ଉତ୍ତର କଲି—'ମଉସା ହଁ ମୁଁ ଅଛି' । ଆପଣ ଏ ଖରାରେ କୁଆଡ଼େ ଯାଇଥିଲେ । କେଉଁଠୁ ଆସିଲେ । 'ବସନ୍ତୁ, ବସନ୍ତୁ । ପାଣି ପିଇବେ କି ବୋଲି ପଚାରିଲି ।

''ପାଣି ଅଛି ଟିକିଏ ଦିଅ ।'' ପାଣି ନେଇ ଢୋକ ପିଇ ନେଇ ସେ ଏକା ନିଶ୍ୱାସରେ କହିଗଲେ ତୁମେ ସଚି ବାବୁ ଜାଣିଛ ତଥାପି ତୁମକୁ ଆଉଥରେ କହୁଛି ସବୁ ଶୁଣ । ମୋର ଏ ଦୁଃଖ କହିବ କାହାକୁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତୁମେ ସବୁ ଶୁଣିଛ, ଜାଣିଛ । ମୋ ଗାଁ ଲୋକଙ୍କୁ କ'ଣ କହି ବୁଝାଇବି । ସେମାନେ ମୋଟେ ମୋତେ ବୁଝିବେ ନାହିଁ । ବିଶ୍ୱାସ କରିବେ ନାହିଁ ।

ତା'ପରେ ସେ ମୋ ହାତକୁ ମୁଁ ଆଗରୁ ଦେଖିଥିବା ନିମନ୍ତ୍ରଣ ପତ୍ରଟି ଆଉଥରେ ବଢାଇଦେଇ କହିଲେ – ପଢୁଛଟି । ଶିକ୍ଷା ଓ ସାଂସ୍କୃତିକ ବିଭାଗମନ୍ତ୍ରୀ ମୁଖ୍ୟ ଅତିଥି ଭାବେ ଯୋଗ ଦେବାଲାଗି ସମ୍ମତି ପ୍ରଦାନ କରିଥିଲେ । ତୁମେ ତ ଜାଣ ମୁଁ କେତେଥର ଗଲାପରେ କେତେ କାକୁତି ମିନତି କରିବା ପରେ ସେ ମନ୍ତ୍ରୀ ମୁଖ୍ୟଅତିଥି ରୂପେ ଗାଁ ପାଠାଗାର ଉତ୍ସବରେ ଯୋଗଦେବା ପାଇଁ ସ୍ୱୀକୃତି ପ୍ରଦାନ କରିଥିଲେ ଏବଂ ତାଙ୍କୁ କହିଥିଲେ ସେକ୍ରେଟାରୀ ଓ ଡ଼ାଇରେକ୍‌ଟରଙ୍କୁ ସେଦିନ ତାଙ୍କ ସଙ୍ଗେ ଯିବା ଲାଗି କହିଦେବାକୁ । ସେମାନେ ମଧ୍ୟ ସମ୍ମତି ଦେଇଥିଲେ ଯିବାକୁ । ବୃଦ୍ଧଙ୍କ ଆନନ୍ଦ କହିଲେ ନ ସରେ । ଷ୍ଟେଟପିଲ୍ଡ ପରି

ସେଦିନ ସେ ନାଚି ହେଉଥାଆନ୍ତି । ବେଶ୍ ଯାକଯମକରେ ଉତ୍ସବ ପାଳିବେ । ମନ୍ତ୍ରୀ ଓ ତାଙ୍କ ଷ୍ଟାଫ୍ ତାଙ୍କ ଉତ୍ସବ ଧୂମ୍‌ଧାମ୍ ଦେଖି ଯଦି କାବା ହୋଇ ନ ଯିବେ ତ ତାଙ୍କୁ କହିବ !

ମୁଁ ସେଦିନ ପଚାରିଥିଲି ମଉସା, ମନ୍ତ୍ରୀ, ଏମ୍. ଏଲ୍. ଏ, ସେକ୍ରେଟାରୀ ଏମାନଙ୍କୁ ନ ନେଲେ କ'ଣ ଉତ୍ସବ ହେବ ନାହିଁ । ମୋର ସେମାନଙ୍କ ଉପରେ ମୋଟେ ଭରସା ନାହିଁ । ଖଣ୍ଡିଏ ଚାକିରି ଲାଗି କେତେ ନ ଧାଇଁଛି । ଦିନେ ଦୁଇଦିନ ନୁହେଁ ଦୀର୍ଘ ଦିନ । ଶେଷରେ ଦିନେ ମନ୍ତ୍ରୀଙ୍କ ପି: ଏ: କହିଲେ ବାବୁ କହିଛନ୍ତି କିଛି ଟଙ୍କା ଯୋଗାଡ଼ କରି ସେ ଅନ୍ୟ ଜଣେ ଭଦ୍ରଲୋକଙ୍କୁ କହିଦେବେ ସାଙ୍ଗ ହୋଇ ବ୍ୟବସାୟ କରିବ । ଏହା ଶୁଣି ମନେ ମନେ ବହୁତ ହସିଲି । "ବେଶ୍ ସାଧୁ ପରାମର୍ଶ ।" ଆଜି ଶାସନରେ ତାଳଗଛ ଗ୍ରାଇ ଦେବା ଓ ମନ୍ତ୍ରୀ ମୋ ପାଇଁ କାମ ଦେବା ସମାନ । ମନେ ମନେ ତାଙ୍କୁ ନମସ୍କାର କରି କହିଲି ତୁମ କଥା ପାଣିର ଗାର । ତା ପରେ ଏଇଠି ପାନ ଦୋକାନଟି ଦେଲି ।

ସେ କହିଲେ, ବୁଝିଲ ସଚି ମୁଁ ଏମାନଙ୍କୁ ବେଶ୍ ଜାଣେ । ତଥାପି ବି ସଂପୂର୍ଣ୍ଣ ଆସ୍ଥା ହରାଇ ନ ଥିଲି । ଏମାନେ ଯେ ଆମ ଅନୁଷ୍ଠାନକୁ ସାହାଯ୍ୟ ଦେବେ ତାର କେଉଁ ଠିକ ଠିକଣା ଅଛି । ଗଲଥର ତ ଶୁଣିଲ ମୋତେ କିପରି ସାହାଯ୍ୟ ମିଳିଲା । ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗର ବଡ଼ଠୁ ଶ୍ରେଷ୍ଠ ପର୍ଯ୍ୟନ୍ତ ସମସ୍ତେ ସହାନୁଭୂତି ଦେଖାଇଲେ । କିଏ ପଚାରିଲା ଆପଣ ଲାଇବ୍ରେରୀ ଗ୍ରାଣ୍ଟ ନେଇ ନାହାନ୍ତି । କିଏ କହିଲା ଗାଁକୁ ଚାଲିଯାଇଥିବ । ଡିପାର୍ଟମେଣ୍ଟ ଯାଇ ବୁଝ । ଶେଷରେ କ'ଣ ହେଲା ଜାଣିଛ ତ ମୁଁ କେତେ ନ ଧାଇଁଛି, ହାଣି ପାଡ଼ିବ ପାଡ଼ିବ ଫ୍ରସ । ମୋର ସେ ସବୁ ମନେ ଅଛି । ଯେତେବେଳେ ବୃଦ୍ଧଙ୍କ ଲାଇବ୍ରେରୀ ନିମନ୍ତେ ସାହାଯ୍ୟ କଥା ମନେ ପଡ଼େ ମୋ ମନ ବିଷାକ୍ତ ହୋଇ ଉଠେ । ଗାଁ । ଲୋକେ ପାଠ ପଢ଼ିବେ । ଦିକଥା ଜାଣିବେ । ମନ୍ତ୍ରୀ ସେକ୍ରେଟାରୀଙ୍କ ମୁହଁରୁ ଦିପଦ ଭଲ କଥା ଶୁଣି ନୂଆ କାମ କରିବାକୁ ଉତ୍ସାହିତ ହେବେ । ସ୍ୱାର୍ଥିତ ଏତିକି । ବୃଦ୍ଧଙ୍କୁ ବାଦ ଦେଲେ ଗାଁ । ଓ ଗାଁ । ଲୋକଙ୍କ ସ୍ୱାର୍ଥ ପ୍ରତି ଅଗ୍ରାଧିକାର ଦେଇ ବିଚାର କରିବା କ'ଣ ମନ୍ତ୍ରୀଙ୍କର ଓ ତାଙ୍କ ପାଖ ଲୋକଙ୍କର କର୍ତ୍ତବ୍ୟ ନୁହେଁ ? ଦୁଃଖ କହିବ କାହାକୁ ? ପଚାରିଲି ମଉସା କ'ଣ ହେଲା ? କାଲି ପରା ଉତ୍ସବ, ମନ୍ତ୍ରୀଙ୍କ ଯିବା କଥା କ'ଣ ହେଲା ?

“ହଁ ସେହି କଥା କହୁଛୁ ଶୁଣ” ସେ ଯାଇପାରିବେ ନାହିଁ । ସେ ଯିବେ ଦିଲ୍ଲୀ । ସେ କହିଲେ ସେକ୍ରେଟାରୀଙ୍କୁ ନେଇ କାମ ଚଳାଇବା ପାଇଁ । “ସେକ୍ରେଟାରୀ କ’ଣ କହିଲେ । ତାଙ୍କୁ ପଚାରିଲେ ନାହିଁ ।” “ସେ ଯାଇ ପାରିବେ ନାହିଁ । ଦିଲ୍ଲୀରୁ ଜଣେ କିଏ ମନ୍ତ୍ରୀ ନା ବଡ଼ ଅଫିସର ଆସୁଛନ୍ତି । ଜଏଣ୍ଟ ସେକ୍ରେଟାରୀଙ୍କୁ ନେଇଯିବାକୁ ସେ ଫୋନକରି ମୋତେ ତାଙ୍କ ଘରକୁ ପଠାଇଲେ । ତାଙ୍କ ଘରଠିକୁ ଗଲି । ତାଙ୍କ ଦେହ ବି ଭଲ ନାହିଁ । ସେ ଫୋନ କଲେ ଡାଇରେକ୍ଟରଙ୍କୁ, ତାଙ୍କ ଘରକୁ ଗଲି । ସେ କହିଲେ ପୂର୍ବରୁ ତାଙ୍କ କାର୍ଯ୍ୟକ୍ରମ ସ୍ଥିର ହୋଇସାରିଛି । ସେ ଫୁଲବାଣୀ ଯିବେ । କୌଣସି ମତେ ଯାଇପାରିବେ ନାହିଁ । ସେ ଫୋନ୍ କଲେ ଏକାଡ଼େମୀ ସେକ୍ରେଟାରୀଙ୍କୁ ସେ ଫୋନରେ ମିଳିଲେ ନାହିଁ ।”

ବୃଦ୍ଧ ତାଙ୍କ ପାଖକୁ ଯାଇ ଅଧା ବିନମ୍ର ହୋଇ କହିଲେ ଆଜ୍ଞା ! କାହାକୁ ଅନ୍ତତଃ ଜଣକୁ ପଠାନ୍ତୁ । ସଙ୍କସନଟା ମାଟି ହୋଇଯିବ । ଗାଁ ଲୋକେ କେତେ ଆଶା କରି ଗୁହାଁ ବସିଛନ୍ତି । ଆପଣଙ୍କ ପରି ମହାନ ବ୍ୟକ୍ତିମାନଙ୍କ ଶ୍ରୀମୁଖରୁ କ’ଣ ଦି’ପଦ ଶୁଣିବାକୁ ।

ତାପରେ କ’ଣ କରିବା ବ୍ୟସ୍ତ ହୋଇ କରି ସେ ଥରେ ଦୁଇଥର ନିଜ ଘର ଭିତରକୁ ଯାଇ କାହାକୁ ଫୋନ କଲେ । ତାପରେ ବାହାରକୁ ଆସି କହିଲେ ନିଅନ୍ତୁ ମୋର ଏହି ସ୍ଲିପ, ସେଠି ଏକାଡ଼େମୀରେ ଦିହକାଷ୍ଟ ସେକ୍ରେଟାରୀଙ୍କୁ ଦେବେ । ସେ ନିଜେ ଯାଇ ନ ପାରିଲେ ଅନ୍ୟ କାହାକୁ ପଠାଇବାର ବ୍ୟବସ୍ଥା କରି ଦେବେ ।

ଚଠି ଧରି ଫେରିଲି । ଏଠି ସେଠି ହୋଇ ଏକାଡ଼େମୀ ଅଫିସରେ ପହଞ୍ଚିଲା ବେଳକୁ ଶୁଣିଲି ସଂଯୁକ୍ତ ବାବୁ ଛୁଟିରେ । ବାକୀ ଯେଉଁମାନେ ସବୁ ମୁଖ୍ୟ ଅତିଥି ହୋଇ ପାରନ୍ତେ, ସେମାନେ ସମସ୍ତେ ମଧ୍ୟାହ୍ନ ଭୋଜନ (ଲଞ୍ଚ) ପାଇଁ ଚାଲିଗଲେଣି । କେବଳ ପିଅନ ଦୁଃଶାସନ ମଝିରେ ମଝିରେ ଉଠି ବେଣ୍ଟିଚର ଉପରେ ପାଣି ପକାଇ ଚାଲିଛି । କେତେ ଗୋଟି ଅଫିସ ରୁମ୍ ଭିତରକୁ ଉଙ୍କି ମାରି ଚାହିଁଲି । ଘରଟିମାନ ବେଶ୍ ଶୀତଳ । ଶାନ୍ତ । ଫ୍ୟାନ ଧୀରେ ଧୀରେ ଘୂରି ଚାଲିଛି । ମୋ ଦେଶର ସାଂସ୍କୃତିକ ଫାଇଲଗୁଡ଼ିକ ଫ୍ୟାନର ମନ୍ଦ ପବନରେ ସ୍ପନ୍ଦିତ ହୋଇ ଉଠୁଛି । ଏସବୁ ଦେଖି ପେଟ ପୂରିଗଲା ।

ଶେଷରେ କିଏ ଯିବା ଠିକ୍ ହେଲା ?

'ଶୁଣ କହୁଛି । ମୁଁ ମୁଖ୍ୟ ଅତିଥି ସନ୍ଧାନରେ ଦୁଃଶାସନ ପାଖରେ ବାରଣ୍ଡାରେ ଅପେକ୍ଷା କରି ବସିଥାଏ । ଆସି ଯାଉଛି ତିନି ବାଜିଲା, ଦୁଃଶାସନ ବି ମୋ ବିଭିନ୍ନ ପ୍ରଶ୍ନର ଉତ୍ତର ଦେଇ ଦେଇ ଶେଷରେ ବ୍ୟସ୍ତ ହୋଇପଡ଼ି କହିଲା— କ'ଣ ବୁଢ଼ା ବାବୁ ତମ ଗାଁରେ ଫଙ୍କ୍‌ସନ ହେବ ବୋଲି ଏଠି ଆଉ କେହି ଖାଇବେ ନାହିଁ ? ଶୋଇବେ ନାହିଁ ? ବସିବେ ନାହିଁ ? ସେମାନେ ଆସିବେ··· ନିଶ୍ଚୟ ଆସିବେ । ଟିକିଏ ଗଡ଼ୁଇ ତଡ଼ୁଇ ହେଉଥିବେ । ଡେରି ହେଉଛି ନାହିଁକି । ଅପେକ୍ଷା କର ।

ଆଉ ସମ୍ଭାଳି ପାରିଲି ନାହିଁ । ବିରକ୍ତ ହୋଇ ଉଠିଲି । ମନେ ମନେ କହିଲି କ'ଣ ହେଲା ମୋ ଦେଶର ଦରମାଖିଆ ନଉକରମାନେ···ଆସିବେ, ନିଶ୍ଚୟ ଆସିବେ, ଅଫିସକୁ ଆସିବେ; ମାତ୍ର ସେମାନଙ୍କର ଅଫିସକୁ ଫେରିବାର ସମୟ ନାହିଁ ! ଧନ୍ୟ ମୋ ଦେଶ । ମୋ ଦେଶର ସଂସ୍କୃତିର ହର୍ତ୍ତାକର୍ତ୍ତା ବିଧାତା ହେଲେ ଏହିମାନେ । ଏହିମାନେ ଯାଇ ମୋ ଗାଁ ଲୋକଙ୍କୁ ସଚେତ, ସଂସ୍କୃତ ହେବାପାଇଁ ଉଦ୍‌ବୋଧନ ଦେବେ । ନା ପ୍ରୟୋଜନ ନାହିଁ । ମୋଟେ ପ୍ରୟୋଜନ ନାହିଁ । ଅପଣାର ଗ୍ଳାନି ଗୁପି ମୁଁ ଦୁଃଶାସନକୁ ପଚାରିଲି, ଆରେ ଭାଇ, ମନ୍ତ୍ରୀ ଠକିଲେ, ସେକ୍ରେଟାରୀ ମନାକଲେ, ଏଠିତ ବଡ଼ ବାବୁମାନେ ତମର ଲକ୍ଷରୁ ଫେରିଲେ ନାହିଁ. ତୁ ଟିକିଏ ଦୟାକରି ଆମ ଗାଁକୁ ଯିବୁ । ମୁଁ ଯିବା ଆସିବା ଖର୍ଚ୍ଚ ଦେବି । ଗାଁ ପାଠାଗାରର ଜନ୍ମଦିନ ଉତ୍ସବ । ତୁ ମୁଖ୍ୟ ଅତିଥି ହେବୁ ।

ଦୁଃଶାସନ ବୃଦ୍ଧଙ୍କ କଥା ଶୁଣି ଓଲଟି ବିରକ୍ତ ହୋଇ କହିଲା— କାହିଁକି ଗୁଡ଼ାଏ ବକର ବକର ହେଉଛ ? କେତେ ଜୋରରେ ଖରା ହେଉଛି ; ଦେଖ. ହେଉ ଗୁହଁ । ଦେଖୁ ଦେଖୁ ଅଧଘଣ୍ଟା ଭିତରେ ଗୁରିଡା ବାଦୁଡ଼ି ଗଛରୁ ଝଡ଼ି ପଡ଼ିଲେଣି । ଏଇ ଆଉ ଗୋଟାଏ ପଡ଼ିଲାଣି ଗୁହଁ । ··ଦୁଃଶାସନର କଥା ଶୁଣି ବୃଦ୍ଧ ଉତ୍ତର କଲେ, ପାଠାଗାର ଗ୍ରାଣ୍ଟ ପାଇଁ ୧୦ଟୁଶି ଥରେରୁ ଅଧିକ ମନ୍ତ୍ରୀଙ୍କ ସମେତ ତୁମ ବାଉବାବୁଙ୍କ ଦ୍ୱାରସ୍ଥ ହୋଇଥିଲି । ଏବୁଟ୍ ନିଡ଼ର ପ୍ରତିଶ୍ରୁତି ମିଳିଥିଲା ମୋଟା ସାହାଯ୍ୟ ମିଳିବ । ଯାହା ମିଳିଲା ତୁମ ଅଫିସରଙ୍କୁ ପଚାରିବୁ । ଆଉ ଆଜି ମୁଖ୍ୟ ଅତିଥି ଇତିହାସ ଶୁଣିଲୁ । ଆଉ ଅଧିକ କହିବି ନାହିଁ କହୁ

ବୃଦ୍ଧ ଗଣନାଥ କ୍ଷୁବ୍‌ଧ ହୋଇ ଦ୍ରୁତପଦରେ ଚାଲି ଆସିଛନ୍ତି ମୋ ପାନ ଦୋକାନ ନିକଟକୁ । ମନରେ ତାଙ୍କର ଅସମ୍ଭବ ଆଘାତ । ପରିବେଶରେ ଅସମ୍ଭବ ଉତ୍ତେଜନା । ବାୟୁମଣ୍ଡଳର ଚାପ ଏକାନ୍ତ ଅସହ୍ୟ ।

ସାମାନ୍ୟ ଶାନ୍ତ ହୋଇ ବସିଗଲା ପରେ ମୁଁ ପୁନଶ୍ଚ ପ୍ରଶ୍ନ କଲି, ମଉସା କାଲି ଉତ୍ସବ ତେବେ କିପରି ଅନୁଷ୍ଠିତ ହେବ ?

ମୁଁ ଗାଁ କୁ ଖବର ଦେଇ ଦେଇଛୁ । ରଘୁନାଥବାବୁ ଅର୍ଦ୍ଧାସି ଗାଁର ପ୍ରାଥମିକ ସ୍କୁଲ୍ ଶିକ୍ଷକ ହାତରେ ବେଙ୍ଗ ଗୋଟାକ ଧରିଛି ମୋ ଗାଁର ପିଲାଙ୍କୁ ଶୀଘ୍ର ଯିଏ ପ୍ରଥମେ ଅକ୍ଷର ଚହ୍ନାଇଛୁ, ଅନ୍ଧକାରର ସାମ୍ରାଜ୍ୟରେ ଯିଏ ପ୍ରଥମେ ଜ୍ଞାନର ବର୍ତ୍ତିକା ଜାଳି ଦେଇଛୁ ସେହି ହେବେ ପାଠାଗାର ଉତ୍ସବର ପଛ-ପୁରୋଧା । ସେ ସବୁ ଚଳାଇ ନେବେ ।

ତାଙ୍କୁ ଆଉ ଅଧିକ କହିବାକୁ ନ ଦେଇ ପୁଣି ପ୍ରଶ୍ନ କଲି ମୁଖ୍ୟଅତିଥିଙ୍କ ପାଇଁ ଯେଉଁ ଦାମୀ ଦାମୀ କପୂରମାଳ କିଣିଥିଲେ ଓ ମାନପତ୍ର ମୁଦ୍ରଣ କରିଥିଲେ ସେ ସବୁ କ'ଣ କରିବେ ? ସେ ବ୍ୟଙ୍ଗ କଣ୍ଠରେ ଉତ୍ତର ଦେଲେ ସଦ୍‌ଯୋଗରେ ସେ ସବୁର ବିନିଯୋଗ କରି ଦେଇଛୁ । ଅବିଶ୍ୱାସ ହେଉଛି ଯଦି ପଦାକୁ ଆସି ଦେଖ ।

ମୁଁ ପଦାକୁ ଆସିବାରୁ ସେ ସଂସ୍କୃତିକ ବିଭାଗର କାଂପସ ଭିତରକୁ ହସ୍ତ ପ୍ରସାରଣ କରି ଦେଖାଇ ଦେଲେ ଓ କହିଲେ ଯାହାଙ୍କ ବେକରେ କପୂରମାଳ ସେ ମୋ ଜାତିର ସଂସ୍କୃତିର ଜାଗ୍ରତ ପ୍ରହରୀ ଓ ତାଙ୍କ ପାଖରେ ଯିଏ ଦଣ୍ଡାୟମାନ ସେ ହେଉଛନ୍ତି ସଂସ୍କୃତିର କର୍ଣ୍ଣଧାର ।

ଚାହିଁ ଦେଖିଲି ଏକାଡେମୀ କାମ୍ପସ ଭିତରର ଆମ୍ବଗଛ ଗୁଳରେ ଉଦ୍ଦଣ୍ଡି ଏକ ଗଧ ଠିଆ ହୋଇ ଧକାଉଛି । ବେକରେ ତାର କପୂରହାର, ତା'ଠାରୁ ସାମାନ୍ୟ ଦୂରରେ ଗୋଟିଏ ବୁଲା କୁକୁର ଶୋଇ ଆଖିବୁଜି ପାକୁଳି କରି ଚାଲିଛି । ତା ସମ୍ମୁଖରେ ନାଲି କାଗଜରେ ମୁଦ୍ରିତ ମାନପତ୍ର ଗୁଡିକ ବିଛିହୋଇ ପଡିଛି ।

ମୋତେ ନୀରବ ହେବା ଦେଖି ବୃଦ୍ଧ ପ୍ରଶ୍ନ କଲେ, କୁହ ସତରେ ମୁଁ ଠିକ୍ କରି ନାହିଁ ? ଯେଉଁଠି ଲୋକପ୍ରତିନିଧି ପ୍ରତିଶ୍ରୁତି ରକ୍ଷା କରେନାହିଁ — ରାଜ

କର୍ମନିଷ୍ଠ କାମ ନ କରି ପ୍ରତାରଣା କରେ— ସେ ଜାତିର ସଂସ୍କୃତି, ସେ ଜାତିର ଭବିଷ୍ୟତ ଗଧ, ଘୁଷୁରିଙ୍କ ତତ୍ତ୍ୱାବଧାନରେ ରହିବ ନାହିଁ ତ ଆଉ ରହିବ କେଉଁଠି ? ତୁମେ ମୋ ଦୁଃଖ ବୁଝି ପାରିବ ନାହିଁ ସଖି ! ଏ ବୃଦ୍ଧ ବୟସରେ ଏ ସବୁ ମୋତେ କେତେ ଦୂର ବ୍ୟଥିତ କରୁଛି ।

କିଛି ସମୟ ମୁଁ ଚାହିଁ ରହିଥିଲି ସେ ଦିନ ସେ ବୃଦ୍ଧଙ୍କର ସେହି କ୍ରୁଦ୍ଧ ନୟନ ଦୁଇଟିକୁ । ତାହା ସେ ଦିନ ମୋତେ ସୂର୍ଯ୍ୟଦଗ୍ଧ ଧରଣୀ ଅପେକ୍ଷା ଅଧିକ ଭୟଙ୍କର ମନେ ହେଉଥିଲା ।

# ବରଜା ହଁସିର ଗାଥା

— ଡକ୍ଟର ଷଡ଼ଗ୍ରାହୀ ମିଶ୍ର

ବରଜା ହଁସିର ଗାଲରେ 'କାନସର' ହେଉଛି । ଥୋପା ଥୋପା ରକ୍ତ ଝରି ପଡ଼ୁଛି । ବରଜା ହଁସିର ଗାଲରେ କାନସର ହୋଇଛି ...। କେତେ ଚେରମୂଳ ବାଟି ସେଥିରେ ସେ ଲାଢ଼ ଘାରିଲାଣି । କେତେ ବଟିକା ଖାଇଲାଣି, ଇଞ୍ଜେକ୍ସନ ନେଲାଣି । କରାମତ ଦେଖେଇନ । ବରଜା ହଁସିର ଘା, ଶୁଖିନ—ଶୁଖି ଶୁଖି ଆସିଲାଣି—ପୁଣିଘା' ହେଲାଣି । ଭୋଳ ପଣ୍ଡିତେ ମହାଦେବଙ୍କ ପାଖରେ ବରଣ ରହିଲେଣି । ଆରୁଆ, ଡ଼ାଲଣା ଖାଇ ସେ ତ୍ରିବେଣୀଶ୍ୱରଙ୍କୁ କେତେ ମନ୍ତ୍ରରେ ସନ୍ତୁଷ୍ଟ କଲେଣି । ବରଜା ହଁସିର ଘା' ଶୁଖି ଆସିଲାଣି—ଧେତ୍‌ଢଣକା ପୁଣି ବାହାରିଲାଣି ।

ବରଜା ହଁସି—ଏମିତଆ ନାଁଟେ କଏ କେବେ ଶୁଣିଛ ? ହଁସିପୁଅ ବରଜୁ । ଜାତିରେ ହଁସି—ନ ଜାଣିଲା ଲୋକେ ତାକୁ ବରଜା ତନ୍ତୀ ବୋଲି ଜାଣନ୍ତି । ସେ ତନ୍ତ ଚଲାଉଥିଲା । ପିଲାଦିନେ ଝଦା ବୁଣି ଗାଁ ହାଟରେ ବିକି ତା ବେଉସା ଚଲାଉଥିଲା । ପିଲା କବିଲାଙ୍କୁ ପୋଷୁଥିଲା—ସେମାନଙ୍କୁ ମଣିଷ କରିବା ପାଇଁ ଚେଷ୍ଟା କରୁଥିଲା ।

ସେଇ ଯୋଉ ବରଜୁ—ଖାସା ଲୋକଟିଏ ଯେଉଁ କାମରେ ଲଗେଇ-ଦେବ ସେ କାମରେ ଲାଗିଯାଇଥିବ । ତାକୁ କାମ ନ ଛାଡ଼ିବାକୁ କହିବା ପର୍ଯ୍ୟନ୍ତ ବରଜୁ ଲାଗିଥିବ କାମରେ । ସତେ ଯେପରି ସେ ଗୀତାର ନିଷ୍କାମ କର୍ମରେ ସାଧନାରତ ଯୋଗୀଟିଏ । ଏଇ ଯୋଗରେ ତାର ଦିହକ ଗଢ଼ିଗଲା—କର୍ମଯୋଗ । ଭୋଗ କଣ ସେ ଜାଣି ପାରିଲା ନାହିଁ—ଉପଭୋଗତ ଦୂରର କଥା ।

ଗାଁ ଗଣ୍ଡାରେ ଏବେ କେତେ ଜାତର କଳବୁଣା ଲୁଗା—ଷାଇନି, ସୁପର ଫାଇନ, ମଡ଼ସାଇଜ, ବମ୍ବେଇ, ଅହମଦାବାଦୀ, କଲିକତା, ଗୁଜରାଟୀ ଚଳ । ବରଜୁ ହଁସିର ତନ୍ତ ଖଣ୍ଡିକ ଏବେ ସଂଘା ଉପରେ ପଡ଼ିଛି । ସାଲେ ଅଧେ ଦାଣ୍ଡଦୁଆର ବାଡ଼ବୁଜାରେ 'କାମଡ଼ା' ହଆହେଲାଣି । ବରଜୁ ଏବେ ନୂଆ ଧନ୍ଦା କରୁଛି । ଗାଁରେ ଅବା କେଉଁ ଧନ୍ଦାର 'ସାଆଣ' ମେଳ ହୋଇଛି । ସେଇ ବାଡ଼ବରଗ କଣ, ସ୍ତ୍ରୀ' ତା ବାକିରେ ମୂଳ ପାଉ— ବହା, ଦୋପୁର, ବେଳୁଡ଼ଣ

ନଲଡ଼ା କଣ୍ଡ କରୁ ଯେଉଁ ଦୁ' ପଇସା ମିଳେ ସେଇଥିରେ ବରଜୁର ଗୁଜୁରାଣ ମେଣ୍ଟି ଯାଏ । କଂଷେ, ଦୁ' କଂସା ପଖାଳ—ଗୋଟେ ଯୋଡ଼େ ଧାନ୍ଦୁଆ ଲଙ୍କା—ଆଉ ଲବଣ ସତ୍ୟାଗ୍ରହର ସ୍ମାରକୀ—ଦେଶୀ ଲୁଣ ଗୁଣ୍ଡେ ।

ସେଇଥିରେ ବରଜୁର ଶାନ୍ତ—କାମଦାମି ବୋଲି ଟିକେ ବରଜୁ ଶିଖି-ପାରିଲାନି । ଇସ୍କୁଲର ଏତୁଣ୍ଡି କାନ୍ଧ ଝପିନି—ବାବୁଭୟାଙ୍କ ପାଠ ପଢିନି—ସେବା ଆଉ କେତେ ବାଟ ଆଗାନ୍ତା ?

ଗୁହାଳ କାନ୍ଥରେ ଗାଈଟିଏ ପକେଇ ଦେ ତା'ଙ୍କ ହାଁକିବା ମନେରଖେ । କେଉଁ ଦିନ କାହା ଘରେ କାମ କଲା—କେତେ ଗଣ୍ଡଣୀ ଧାନ ତା'ର ପାଉଣା ହେଲା—କେତେ କରଜା ରହିଛି,—କେତେ ଶୁଝିଲା, ଯୋଉଁ କରଜାକୁ ସେଇ କରଜା—। ଦେଖି କିଏ କେବେ ଶୁଝେ ବୀରୁ; ସେ ତ ଏକାନ୍ତ—ଅମାପ "ବର ଗଛମୂଳ" ନ ଦେଖିଲେ ତାଙ୍କୁ ସୁଝଉଛି କିଏ ?

ଏଇ ହଉଛି ବରଜୁ ହଁସିର ପରିଚୟ । 'ବରଜୁ ଟିକେ ସତ୍ତ୍ୱବର୍ତ୍ତୀ ଦେଇ-ଦେବ ଆଜ' ।, ବରଜୁ ସନ୍ତକନା ଖୋଜ ଖୋଜ ବାବୁଙ୍କ ରୁମାଲୁ ଚଣ ସନ୍ତବନ୍ତ ଦେଇଛି । କଏ କହୁଛି ବାବୁ "ରୁମାଲୁ ଫ ମାଲୁ । ସତ୍ତ୍ୱବର୍ତ୍ତୀ ତ ଦିଆ ହେଇଛି; ମା' ବୃନ୍ଦାବତୀ ସନ୍ତିଟିକେ ପାଇଛନ୍ତି ତ ସେଇ ଯଥେଷ୍ଟ ।

ବରଜୁ ଛୋଟିଆ ମଣିଷଟିଏ । ଛୋଟିଆ ତା'ର ଦେହ । ସଦା ହାସ୍ୟୋଜ୍ଜ୍ୱଳ ମୁହଁ । କଥା କହିଲେ ବିଷାଦ ଦେଲୁ ବରଜୁ ଗୃହିଣୀ ବୁଝେ ବାରଣା ଭୁଲିଯାଏ । ଖାଣ୍ଟି ଲୋକଟିଏ, ଠିକଣା ଲୋକଟିଏ—ଘାତରଅନ୍ତର ନାହିଁ ନନ୍ଦଫନ୍ଦ ନାହିଁ । ସଂସାରକୁ କେଇଦିନ ପେଇଁ ଆସିବୁ ବାବୁ, ଏତେ କୁଟ କପଟରୁ କ'ଣ ବୋହି ନେଇଯିବ । ଆସିଛି ଏକା ଯିବ ଏକା—ଏଇ ଅଳ୍ପେଇ ଦିନର ସଂସାରରେ ଏତେ ମାୟା କାହିଁକି ବାବୁ ?

ବରଜୁର କିନ୍ତୁ ମାୟା ଥିଲା—ତା' ଭାରିଯା ପ୍ରତି—ସ୍ନେହ ଏକ ଅନାସକ୍ତ ମାୟା । ଏକାଠି ଘର କରିଛନ୍ତି । କାହିଁ କେତେ ବରଷ ହେବ—ଚାଳିକୋଡ଼ି ବରଷରୁ ବେଶୀ ହେବ । ନାଡ଼ଆସିଟା ହୋଇଛନ୍ତି, ମୁହଁ ଲୁଷାଲୁଷି ହେଇଛନ୍ତି । କିନ୍ତୁ ଘର କରି ରହିଛନ୍ତି ଏପର୍ଯ୍ୟନ୍ତ । ଏ କାଳ ମନ୍ଦରଗା ଯୁଗରେ ବି କେହି

କାହାକୁ ଛାଡ଼ି ପାରନ୍ତୁନାହିଁ । ବରଜୁର ସ୍ତ୍ରୀ ଓରଫ ଷ୍ଣଲତା—ତା' ନାଁ ଲୋକେ ଭୁଲିଗଲେଣି ତା'ର ପ୍ରଥମ ସନ୍ତାନର ନାଁରେ ତା'ର ପରିଚିତ-ଜୁଲମା । ସେଇ ଜୁଲମା, ହୁଁସିଆଣୀ ଜୁଲମା ପରଘରେ ଧାନକୁଟି, ଖୁଦ ମକୁଣ୍ଡ ଦିପୋଷ ଯାହା ପାଏ ସେଇଥିରେ କେତେ ଦିଅଁ ଦେବତାଙ୍କୁ ସନ୍ତୋଷ କରି ପାଇଥିଲି ଧନ ବକଟପିଲା, ଜୁଲ' ଗେହ୍ଲୀ ଆଉ ଗୋଟିଏ ନାକୁରୁ ବୋଲି ପୁଅ ଏକୋଇର ବଳା ଝିଗିକେସନ । ଆଉ କେତେ ଆସିଛନ୍ତି, ଯାଇଛନ୍ତି—ଜୁଲମା ଜୀବନର ସେ ଇତିହାସ ।

ଜୁଲମା ଅନେଇଁ ତା'ଛୁଆଙ୍କୁ କ୍ଷୀର ଦେଇଛି । ପୁଣି କ୍ଷୀର ଖୋଇଛି । ବାବୁଭାୟାଙ୍କ ପିଲାଙ୍କୁ । ସତେ ଯେପରି ସେ ଜନନୀ, ଜାୟା ହୋଇ ପାରିଲାନି । ପର ଦୁଃଖରେ ତା, ଅନ୍ତର କାନ୍ଦେନାହିଁ, ରକତ କାନ୍ଦେ । ସେଇ ବାବୁଭାୟାମାନେ କାହିଁ କୋଉଠି ଦୋପଟି ହେଲେଣି, ମାଷ୍ଟର ହେଲଣି-ବଡ଼ ବଡ଼ ଚାକିରି କଲେଣି, ପୃଥୀ ଘୂରିଲେଣି କିନ୍ତୁ ଜୁଲମା ସେଇ ବାସି ପାଇଟି କରି ଧାନକୁଟି ତା'ର ଗୁଜରାଣ ମେଣ୍ଟାଇ ଚାଲିଛି । ସତେ ଯେମିତି ତା, ପୁଅ, ଝିଅ, ଗାଁ ଗୋଟା ଯାକର ଦାୟିତ୍ୱ ତା' ମୁଣ୍ଡରେ ।

ସମସ୍ତ ବଦଳି ଯାଇଛି-କିନ୍ତୁ ଜୁଲମା ବଦଳିନି-ଏବେ ହେଁକ ଉପାସରେ ଓଳିଏ ଦିଓଳି କଟେ—ତଥାପି ଜୁଲମାର ମାନବୀୟ କରୁଣାର ଧାର ଶେଷ ହୋଇନି—ଅଫୁରନ୍ତ ତା'ର ଉତ୍ସ ।

ସେଇ ଜୁଲମାକୁ ଦେଖିଲେ ଶ୍ରଦ୍ଧା ଆପଣା ଛାଏଁ ଆସେ, ମୁଣ୍ଡ ଆପଣା ଛାଏଁ ନଇଁଯାଏ ଏଇ ମହାନ୍ ନାରୀ ନିକଟରେ । ଜୁଲମା ଏବେ ବଞ୍ଚିଛି । ହଁ' ଜୁଲମା ବଞ୍ଚିଛି—ଆଉ କେତେକାଳ ପରେ ଜୁଲମା ଚାଲିଯିବ । ବରଜୁ ହଁସିର 'କାନସର' ଭଲ ହୋଇ ପୁଣି ବାହାରି ପଡ଼ିବ । ବରଜୁ ବି ଚାଲିଯିବ ତା, ସାଙ୍ଗରେ, ଲୁଚିଯିବ କେତେ ଜଣା ଅଜଣା ସ୍ମୃତିକଥା । ସେ ବେଢ଼ଣ, ସେ ଗାମୁଛା, ସେ ଫୁଲପକା ଚଦର ଆଉ ବୁଣା ହବନ । ବୁଣାକାରଙ୍କର କାଣ୍ଡ ବଦଳି ଯାଇଛି, ବଦଳି ଯିବ । ରୂପ ବଦଳି ଯିବ—ସେମାନେ ହୁଏତ ହେବେ ପିଅନ, ଚପରାଶି, ଅର୍ଦ୍ଦଳୀ କିମ୍ବା ଅକ୍ଷରେ ଦୁଇ ଅକ୍ଷର ପଢ଼ି ଗାଁ ଟାଉଟର ।

ଏଇ ବରଜୁ, ଏଇ ପଦନ, ଏଇ ବାବାଜି ଏଇ ଭଗିଆ-ଏମାନେ କେବେ କିମିତି ଏ ଗାଁକୁ କୋଉଠୁ ଆସିଥିଲେ ତା'ର ଇତିହାସ କେହି ରଖିନି— କେହି

ରଖିବାକୁ ଇଚ୍ଛା ପ୍ରକାଶ କରନାହିଁ । ସମାଜବାଦୀ ଗ୍ରନ୍ଥରେ ଏମାନେ ବୋଟେ ବୋଟେ ମାଟି-ଗ୍ରେଟ ଲୋକଗୁଡ଼ାକ । କିନ୍ତୁ ଲୋକମୁଖର ପ୍ରଚଳିତ ଇତିହାସ କହେ ଏମାନେ ଥିଲେ ସହଜିଆ-ବୌଦ୍ଧଧର୍ମରେ ଦୀକ୍ଷିତ ଥିଲେ ଏମାନଙ୍କର ପୂର୍ବ-ପୁରୁଷ । ବେଉସା ଥିଲା ସ୍ୱାଙ୍କର ଖେଳ ବୁଣାବୁଣି-ଏମାନେ ଥିଲେ କିନ୍ତୁ ଶୂନ୍ୟ ମହାଶୂନ୍ୟର ଉପାସକ-ବୌଦ୍ଧ । 'ହଂସ'ର ଅନ୍ୱେଷକ- ଏବେ ହଁସି ।

ବରଜୁ ବୋଧହୁଏ ସେଇ ପରମ୍ପରାରୁ ଦାଣ୍ଡାଦା । କାମନାବିହୀନ ଏକ ମଣିଷ-ନିରଳସ ମଣିଷ । ଏବେ ବୁଢ଼ୀ ଜାଗୁଲେଇଙ୍କୁ ପୂଜେ, ବୁରୁନ୍ଦାବତୀଙ୍କୁ ପୂଜେ ପୂଜେ ତା'ର ଅନ୍ଦରକାଶ ତନ୍ତ ଖଣ୍ଡିକ-ପୂଜେ ଏବେ ବସୁଧାକୁ ପୁଣି ତ୍ରିବେଣୀ ଶ୍ୱର ମହାଦେବଙ୍କୁ, କିନ୍ତୁ ସେ ପୂଜନ, ସେ ଭଜନ ତା'ର କାମନାର ବ୍ୟାପ୍ତି ପାଇଁ ନୁହେଁ-କାମନାର ବିନାଶ ପାଇଁ । ଦୁଃଖର ବିନାଶ ପାଇଁ ଏ ପୂଜନ ଏକ ଆତ୍ମୋତ୍ସର୍ଗ-ଏକ ନୈବେଦ୍ୟ । ଏକ ଶରଣାପନ୍ନ ମଣିଷର କାମନାବିହୀନ ଜୀବନର ଇତିକଥା ।

ବରଜା ହଁସିର ଗାଲରେ ଏବେ 'କ୍ୟାନସର' ହୋଇଛି । କିନ୍ତୁ ବରଜୁ ଟଳିଟଳି ଚାଲିଛି, ସେଇ ମହାଦେବଙ୍କ ପାଖକୁ । ଏ ଯାତ୍ରାପଥର ଯେପରି ଇତି ନାହିଁ । ଯଦିଓ ବରଜୁର ଅନ୍ତକାଳ ସରି ଆସୁଛି । "ଏକଲା ଚଲୋ ଏକଲା ଚଲୋ ଏକଲା ଚଲୋ"ରେ । ତା'ର ଡ଼ାକ ଶୁଣି କେହି ଆସିବେ ନାହିଁ-କାଲି ହୁଏତ ବରଜୁ ଚାଲିଯିବ । ଜୁଳମା ଚାଲିଯିବ ପଡ଼ିରହିବ ତାଙ୍କର ସ୍ମୃତି-ସେ ସ୍ମୃତି ଦର୍ଭାଗ୍ୟର ଇତିହାସରେ ଅପାଂକ୍ତେୟ ହୋଇ ପଛକେ ।

ବରଜୁ ଚାଲିଛି ଯଡେ ଯେପରି ତା'ର ପଦପାତରେଧ୍ୱନିତ ହେଉଛି........ ବୁଦ୍ଧଂ ଶରଣଂ ଗଚ୍ଛାମି, ସଂଘଂ ଶରଣମ୍ ଗଚ୍ଛାମି........ଧମ୍ମଂ ଶରଣଂ ଗଚ୍ଛାମି । ଏଇ ସେଇଧମ୍ମ-ଧର୍ମ-ବରଜୁ ହଁସିର ଧରମ-ଜୁଳମାର ଧରମ । ହଁସି ସାହିର ଧରମ-ବୌଦ୍ଧଙ୍କର ବଂଶ ପରମ୍ପରାର ଧରମ । ଏ ଧରମ ବୁଡ଼ିଯିବ-ବୁଡ଼ିଗଲା-ତେବେ ବି ରହିଯିବ ବରଜା ହଁସିର ମଣିଷପଣିଆ--ଏ ମଣିଷପଣିଆର ଇତିହାସ କ'ଣ କେହି କେବେ ରଚନା କରିବେ ?

ସେ କଥା କାଳ କହିବ-କାଳାନ୍ତର ଗାଇବ ।

ବରଜା ହଁସିର ଗାଲରେ ଏବେ 'କ୍ୟାନସର' ହୋଇଛି । ବୁନ୍ଦା ବୁନ୍ଦା ରକ୍ତ ଝରି ପଡ଼ୁଛି। କୁଣ୍ଠରୋଗ ଯୀଶୁଙ୍କର ରକ୍ତ କ'ଣ କେବେ ଶୁଖିପାରେ ?

ବରଜୁ ........ତମକୁ ମୁଁ ମୋର ପ୍ରଣତି ଜଣାଉଛି ଏତେ ଦୂରରେ ଥାଇ-- ତମକୁ ଏତେ ନିକଟରେ ପାଇ ।



## ମୟୂର ପବ୍ଲିକେସନ୍ସ୍‌ର ଅନ୍ୟ କେତୋଟି

### - ଗଳ୍ପ ସଂକଳନ -

| | |
|---|---|
| ଶତ୍ରୁଘ୍ନ ନାଥ | ... ଆମେ ଓ ସେମାନେ |
| ଶାନ୍ତନୁ କୁମାର ଆଚାର୍ଯ୍ୟ | ... ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ |
| ବିନୋଦିନୀ | ... ବିଦିଆର ଆତ୍ମକଥା |
| ରମେଶ ଚନ୍ଦ୍ର ଧଳ | ... ଶେଷ ଉପହାର |
| ଶାନ୍ତିଲତା ମିଶ୍ର ଓ ଭବଗ୍ରାହୀ ମିଶ୍ର | ... ଜିନିଆ ଓ ଜହ୍ନି ଫୁଲ |
| ଗୋପିନାଥ ମହାନ୍ତି | ... ମନର ନିଆଁ |
| ବିଶ୍ୱରଂଜନ | ... ଅନ୍ତ କଥାର ଗଳ୍ପ କେତୋଟି |

